# ଝଡ଼ର ଈଗଲ

ଲେଖକ
**ବିଜୟ କୁମାର ମହାନ୍ତି**



ପ୍ରକାଶକ
**ଜଗନ୍ନାଥ ରଥ**
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦବିହାରୀ, କଟକ-୨

ଝଡ଼ର ଇଗଲ

ଲେଖକ :
**ବିଜୟ କୁମାର ମହାନ୍ତି**

ପ୍ରକାଶକ :
**ଜଗନ୍ନାଥ ରଥ**
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦବିହାରୀ, କଟକ- ୨

ଅକ୍ଷରସଜ୍ଜା :
**ଅନୁପମା ଡିଟିପି**
ଅଲିଂସାବଜାର, କଟକ

ପ୍ରଥମ ସଂସ୍କରଣ :
**୨୦୨୨**

ପ୍ରଚ୍ଛଦ :
**ଉତ୍କଳ କେଶରୀ ସିଂହ**

ମୁଦ୍ରଣ :
**ମଜଦୁର ପ୍ରିଣ୍ଟର୍ସ**
ଚାନ୍ଦିନୀଚୌକ, କଟକ

ମୂଲ୍ୟ : ଟ.୧୦୦/-

**JHADARA EAGLE**

*Written by* :
**Bijaya Kumar Mohanty**
Mob : 7077705360

*Published by* :
**M/s Jagannath Ratha**
Publisher & Bookseller
Binodbehari , Cuttack-2

*First Edition* :
**2022**

*Printed at* :
**Majdoor Printers**
Chandinichouk ,Cuttack

*Price* :
**Rs. 100/-**

# ତୁମେ ଲେଖ, ମୁଁ ପଢୁଛି ...

ଓଡ଼ିଶାରେ ବହୁ ସାହାସୀ ସଂଗ୍ରାମୀଙ୍କ କଥା ଶୁଣିଛ । ସେମାନଙ୍କ ଅବଦାନ ମଧ୍ୟ ବର୍ଷ ବର୍ଷର ଇତିହାସ ହୋଇ ରହିଛି । ତେବେ ଏଭଳି ଜଣେ ସାହାସୀ ବ୍ୟକ୍ତି ଥିଲେ ଯାହାଙ୍କ ଜୀବନ କାହାଣୀ ଖୁବ୍ ପ୍ରେରଣାପ୍ରଦ । ଏହା ଜାଣିଲେ ଶିଶୁଙ୍କ ଠାରୁ ବୟସ୍କଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଭିତରେ ଜାତିପ୍ରୀତିର ସ୍ଫୁରଣ ଆସିବ । ସେ ହେଉଛନ୍ତି ବିଜୁ ପଟ୍ଟନାୟକ । କେବଳ ଓଡ଼ିଶା ନୁହେଁ, ଦେଶବିଦେଶ ଚାରିଆଡ଼େ ତାଙ୍କ ସୁଖ୍ୟାତି ରହିଛି । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ସେ ପାଇଛନ୍ତି 'ଭୂମିପୁତ୍ର' ଉପାଧୀ । ଦେଶର ସ୍ୱାଧୀନତା ଲଢ଼େଇ ଓ ପରବର୍ତ୍ତୀ ସମୟର ରାଜନୀତିରେ ତାଙ୍କର ତୁଙ୍ଗ ବ୍ୟକ୍ତିତ୍ୱର ପରିଚୟ ମିଳେ । ବିଜୁବାବୁ ଥିଲେ ଜଣେ ପ୍ରଗତିଶୀଳ ଚିନ୍ତାଧାରା ସଂପନ୍ନ ମଣିଷ । ସର୍ବଦା ସେ ଥିଲେ ବ୍ୟକ୍ତି ସ୍ୱାର୍ଥରୁ ଉର୍ଦ୍ଧ୍ୱରେ । ତାଙ୍କ ସାମନାରେ ଠିଆ ହୋଇ ଦିନେ ତାଙ୍କ ମୁହଁରୁ ଶୁଣିଥିଲି - 'ତୁମେ ଲେଖ, ମୁଁ ପଢୁଛି ।' ଆଜି ସେ ନାହାନ୍ତି,ତାଙ୍କ ପାଇଁ ଲେଖୁଛି । ହେଲେ ସେ କ'ଣ ଆଉ ପଢ଼ିପାରିବେ ! ମାତ୍ର ଉତ୍ତର ପିଢ଼ି ଏହା ପଢ଼ି ତାଙ୍କ ଆଦର୍ଶରେ ଅନୁପ୍ରାଣୀତ ହେଲେ ଶ୍ରମ ସାର୍ଥକ ହେବ ।

- ଲେଖକ

# ଏଥିରେ ଅଛି...



# ପୁଅର ନାଁ ହେଲା ବିଜୟାନନ୍ଦ

ସେଦିନ ଖୁସିରେ ଉଛୁଳି ଉଠୁଥିଲା ଘର । ସମସ୍ତେ ଆନନ୍ଦରେ ମସଗୁଲ ଥିଲେ । ମୁଖରିତ ହୋଇଉଠୁଥାଏ ସାରା ପରିବାର । ସାଇ ପଡ଼ିଶା ମିଠା ବଣ୍ଟା ଚାଲିଥିଲା । ସତେ ଯେମିତି କିଛି ଉତ୍ସବ ପାଳୁଛନ୍ତି ଘର ଲୋକେ । ସବୁ ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନ ଖୁସି । ପୁଅଟିଏ ହୋଇଛି ଯେତେବେଳେ, କିଏ ଖୁସି ନ ହେବ କହିଲେ ? ମା' ଆଶାଲତାଙ୍କ ଆଶା ପୂରା ହୋଇଛି । ଇଏ ତାଙ୍କର ଦ୍ୱିତୀୟ ପୁଅ । ସେ ଯେମିତି ସ୍ୱର୍ଗରୁ ଚାନ୍ଦଟିଏ ପାଇଛନ୍ତି । ଭଗବାନ ତାଙ୍କ କୋଳକୁ ଆଉ ଗୋଟିଏ ପୁଅ ଦେଇଛନ୍ତି । ମା' ଆଶାଲତାଙ୍କର ଆଶା ପୂରା ହୋଇଛି ।

ବାପା ଲକ୍ଷ୍ମୀନାରାୟଣଙ୍କର ମଧ୍ୟ ଗୋଡ଼ ତଳେ ଲାଗୁନି । ସେ ଈଶ୍ୱରଙ୍କୁ ଜଣାଉଥା'ନ୍ତି, ଏ ପୁଅଟି ତାଙ୍କର କୂଳ ଉଜ୍ଜ୍ୱଳ କରୁ । ତା'କୁ ଆୟୁଷ ଦିଅନ୍ତୁ । ବଡ଼ ମଣିଷ କରନ୍ତୁ । ସେ ଭଲ ମଣିଷଟିଏ ହେଉ । ଏମିତି କେତେ କଥା ଭାବି ଭାବି ସେ ଗାଧୋଇ ସାରି ଘରକୁ ଫେରୁଥା'ନ୍ତି । ହଠାତ୍ ସାମନାରେ ଦେଖାହେଲେ ଜଣେ ପୂଜକ । ଲକ୍ଷ୍ମୀନାରାୟଣଙ୍କୁ କହିଲେ– "ଆପଣଙ୍କର ପୁଅଟିଏ ହୋଇଛି ପରା । ସେ ପୁଅ ସାଧାରଣ ପିଲା ନୁହେଁ । ସେ ଖୁବ୍ ଅସାଧାରଣ ଓ ସାହସୀ ହେବ । ସୂର୍ଯ୍ୟଙ୍କ ପରି ତେଜିୟାନ ହେବ । ସମସ୍ତେ ତା'କୁ ଭଲ ପାଇବେ ।" ନନାଙ୍କଠାରୁ ଏକଥା ଶୁଣି ଲକ୍ଷ୍ମୀନାରାୟଣ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ତାଙ୍କ ମୁହଁକୁ ଚାହିଁଲେ । ପୂଜକ କ'ଣ ପୁଅର ଭବିଷ୍ୟତ ବିଷୟରେ ଜାଣିପାରିଛନ୍ତି । ତାଙ୍କ ଆଖିରୁ ଦୁଇଟୋପା ଲୁହ ଖସିପଡ଼ିଲା । ସେ ନିଜର ଖୁସିକୁ ରୋକି ପାରିଲେନି । କହି ପକାଇଲେ– "ତୁମ ତୁଣ୍ଡ ସୁ-ତୁଣ୍ଡ ହେଉ ନନା । ତୁମେ ମୋ ପୁଅକୁ ଆଶୀର୍ବାଦ କର । କଲ୍ୟାଣ କର । ତୁମ କଥା ସତ ହେଉ । ସେ ମଣିଷ ପରି ମଣିଷଟିଏ ହେଉ । ରାତିର ଅନ୍ଧାର ହଟାଇ ସୂର୍ଯ୍ୟ ଆଣିଥାଏ ସୁନ୍ଦର ସକାଳଟିଏ । ସେମିତି ମୋର ଏ ପୁଅ ପରାଧୀନତାର ଅନ୍ଧାର ଭିତରୁ ବିଜୟର ବାର୍ତ୍ତା ଆଣୁ ।"

ସେତେବେଳେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ଦେଶ ବଡ଼ ଦୁର୍ଦ୍ଦିନ ପରିସ୍ଥିତି ଦେଇ ଗତି କରୁଥାଏ । ଫିରିଙ୍ଗିମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଥା'ନ୍ତି ଦେଶବାସୀ । ଲକ୍ଷ୍ମୀନାରାୟଣଙ୍କ ପରିବାର ସଂଗ୍ରାମୀ ପରିବାର । ସଂପର୍କୀୟମାନେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ଥା'ନ୍ତି । ତେଣୁ ଲକ୍ଷ୍ମୀନାରାୟଣଙ୍କ ପରିବାରରେ ଇଏ ଯେଉଁ ସନ୍ତାନ ଜନ୍ମନେଇଛି, ସେ ବଡ଼ହେଲେ ନିଶ୍ଚୟ ସଂଗ୍ରାମୀଟିଏ ହେବ । ଲକ୍ଷ୍ମୀନାରାୟଣଙ୍କ ସହ କିଛି ସମୟ କଥା ହେବାପରେ ପୂଜକ ତାଙ୍କ ବାଟରେ ଚାଲିଗଲେ । ଲକ୍ଷ୍ମୀନାରାୟଣ ଘରକୁ ଫେରିଆସି, ପୂଜକ କହିଥିବା କଥା ସମସ୍ତଙ୍କୁ ଶୁଣାଇଲେ । ପୁଅର ଭଲ ଶୁଣିଲେ ସମସ୍ତେ ଖୁସିହେବେ ନିଶ୍ଚୟ । ତେବେ ପୁଅର ନାଁ କ'ଣ ଦିଆଯିବ ? ଦେଶ ପରାଧିନତା ଭିତରୁ ବିଜୟର ସନ୍ଦେଶ ଆଣି ଆସିଥିବା ଏହି ଶିଶୁଟିର ନାଁ ନେଇ ଲକ୍ଷ୍ମୀନାରାୟଣ ବି ଚିନ୍ତା କରୁଥିଲେ । ମନରେ 'ବିଜୟ' ଶବ୍ଦଟି ବାରମ୍ବାର ଉଚ୍ଚାରିତ ହେଉଥାଏ । ତାହା ହିଁ ହେଲା । ମାମୁଙ୍କ ନାଁ ସହ ମିଶାଇ ପୁଅର ନାଁ ଦିଆଗଲା– ବିଜୟାନନ୍ଦ ।

ପରିବାର ଲୋକେ ଚାହୁଁଥିଲେ ଯେ, ଏହି ଶିଶୁଟି ବିଜୟରେ ଆନନ୍ଦିତ ହେଉ । ସମସ୍ତଙ୍କ ଭିତରେ ବିଜୟର ଆନନ୍ଦ ବାଣ୍ଟୁ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖ । ସେଦିନ କଟକ ସହରର ତୁଳସୀପୁର ଅଞ୍ଚଳରେ ଥିବା 'ଆନନ୍ଦ ଭବନ'ରେ ଏଇ ଯେଉଁ ଶିଶୁଟି ଭୂମିଷ୍ଠ ହୋଇଥିଲା ସେ ଯେ ଦିନେ ଏ ମାଟିର ଗୌରବ ହେବ, ବାଲ୍ୟକାଳରୁ ତା'ର ସୂଚନା ମିଳିଥିଲା । ପିତା ଲକ୍ଷ୍ମୀ ନାରାୟଣ ଓ ମାଆ ଆଶାଦେବୀ ପିଲାଟିର ନାଁ ଦେଇଥିଲେ ବିଜୟାନନ୍ଦ । ଯିଏକି ପରବର୍ତ୍ତୀ ସମୟରେ ବିଜୁ ପଟ୍ଟନାୟକ ନାଁରେ ଜଣାଶୁଣା ହେଲେ । ଓଡ଼ିଶା ପାଇଁ ସୁନାମ ଆଣିଲେ । ଲୋକେ ତାଙ୍କୁ ଶ୍ରଦ୍ଧାରେ 'ବିଜୁବାବୁ' ବୋଲି ଡାକିଲେ । ବିଜୁ ପଟ୍ଟନାୟକ ପିଲାଦିନରୁ ଅତ୍ୟନ୍ତ ବିଚକ୍ଷଣ ଓ ଦୁଃସାହସୀ ଥିଲେ ।



# ବଡ଼ ହେଲେ ପାଇଲଟ୍ ହେବି

ପ୍ରଥମ ବିଶ୍ୱଯୁଦ୍ଧ ପରର କଥା । କଟକ କିଲ୍ଲା ପଡ଼ିଆରେ ଗୋଟିଏ ଉଡ଼ାଜାହାଜ ଓହ୍ଲାଇଲା । ଏକଥା ଶୁଣିଲା ମାତ୍ରେ ବାଲିଯାତ୍ରା ପଡ଼ିଆ ମାତ୍ର କିଛି ସମୟ ଭିତରେ ଲୋକାରଣ୍ୟ ହୋଇ ଉଠିଲା । ଲୋକଙ୍କର ଧାଡ଼ି ଛୁଟିଲା ଉଡ଼ାଜାହାଜ ଦେଖିବାକୁ । ଏହା କେମିତିକା ଜିନିଷ । ଶୂନ୍ୟ ଆକାଶରେ କେମିତି ପକ୍ଷୀପରି ଉଡୁଛି ? ପିଲାଠୁ ବୁଢ଼ାଙ୍କଯାଏ ସମସ୍ତଙ୍କର ଭିତରେ ଏଇ ଉତ୍କଣ୍ଠା । ସ୍କୁଲ, କଲେଜ ପିଲା ତ ପାଠପଢ଼ା ଛାଡ଼ି ଚାଲିଆସିଲେ ଏହା ଦେଖିବାକୁ । ପ୍ରବଳ ଭିଡ଼ ମନେ ହେଉଥିଲା, ଆଉ ଗୋଟେ ବାଲିଯାତ୍ରା ଯେମିତି ହେଉଛି । ଉଡ଼ାଜାହାଜଟିକୁ ଗୋରା ପୋଲିସ୍ ଜଗି ରହିଥିଲେ । କାହାରିକୁ ପାଖକୁ ଛାଡ଼ି ଦେଉ ନ ଥିଲେ । ପୋଲିସ୍ ହାତରେ ଲାଠିଧରି ଜଗିଥା'ନ୍ତି । ଉଡ଼ାଜାହାଜ ପାଖକୁ କାହାକୁ ଛାଡୁ ନଥା'ନ୍ତି । ବିଜୟାନନ୍ଦ ସେତେବେଳେ ସ୍କୁଲରେ ପଢୁଥିଲେ । କିଶୋର ବିଜୁଙ୍କ ଇଚ୍ଛା ହେଲା କିପରି ସେ ଉଡ଼ାଜାହାଜକୁ ଛୁଇଁବେ । ସେ ସାହସ ସଞ୍ଚୟ କରି ଲୋକଙ୍କ ଭିଡ଼ ଭିତରେ ଆଗକୁ ଯିବାକୁ ଚେଷ୍ଟା କରୁଥା'ନ୍ତି । ହଠାତ୍ ଦେଖାଗଲା, ପୋଲିସ୍ ଆଖିରେ ଧୂଳିଦେଇ କର୍ଡନ ଭାଙ୍ଗି ସେ ଉଡ଼ାଜାହାଜ ଇଞ୍ଜିନ୍ ପାଖରେ ହାଜର । ଉଡ଼ାଜାହାଜ ଦେଖିବା ତା' ପାଇଁ ନୂଆ । ଅନ୍ୟମାନେ କର୍ଡନ ବାହାରେ ଥିବାବେଳେ, ସେ ଭିତରେ । ତେଣୁ ଖୁସିର ସୀମା ନ ଥିଲା । ପିଲାଟି ଉଡ଼ାଜାହାଜ ଦେଖୁଦେଖୁ ତା'ର ଡେଣାରେ ଟିକେ ହାତ ପକାଇ ଦେଇଛି । ଏତିକିବେଳେ ଜଣେ ପୋଲିସର ନଜର ପଡ଼ିଲା । ସେ ଦଉଡ଼ିଆସି ପିଲାଟିକୁ ଝିଙ୍କିଆଣି ନାଲିଆଖି ଦେଖାଇ ଲାଠିରେ ପିଟିବାକୁ ଲାଗିଲା । ଦେହରେ ନୋଳା ଫାଟିଗଲା । ପରେ କର୍ଡନ ବାହାରେ ଆଣି ଛାଡ଼ିଦେଲା । କିଶୋରଟି ମନେମନେ ରାଗୁଥାଏ । ଗୋରା ପୋଲିସ ହାତର ମାଡ଼ ତା'ଙ୍କୁ ଖୁବ୍ ବାଧିଲା । ଆମ ଦେଶରେ ଶାସନ କରି ଆମ ଉପରେ ଜୁଲୁମ୍ । ଏହାକୁ କଦାପି ବରଦାସ୍ତ କରାଯିବନି । ଏହାର ଜବାବ ଦେବାକୁ ହେବ । ଏହି ସମୟରେ କିଶୋରଟି କହିବାର ଶୁଣାଗଲା– ''ମୁଁ ଟିକେ

ଉଡ଼ାଜାହାଜର ଡେଣା ଛୁଇଁବାରୁ, ମୋତେ ତମେ ଠେଲି ବିଦା କରିଦେଲ । ମୁଁ ଛୋଟପିଲା ବୋଲି ନା କ'ଣ ? ଦେଖିବ– ମୁଁ ଦିନେ ବଡ଼ ହୋଇ ଉଡ଼ାଜାହାଜ ଚଳେଇବି, ଆଉ ଏଇଠି ଏଇ ପଡ଼ିଆକୁ ଉଡ଼ାଜାହାଜ ଆଣି ଆସିବି । ଦେଖିବା, ସେତେବେଳେ କୋଉ ପୋଲିସ୍, ମୋତେ ଅଟକାଇବ ?" କିଶୋର ବିଜୁ ଠବୁକ ମାଡ଼ର ପ୍ରତିବାଦ କରି ନ ଥିଲେ ସତ, ମାତ୍ର ଜୀବନରେ ଦିନେ ବଡ଼ ପାଇଲଟ୍ ହେବାକୁ ସେ ସେଦିନ ମନେ ମନେ ଶପଥ ନେଇଥିଲେ– ''ବଡ଼ ପାଇଲଟ ହେବି । ଆକାଶରେ ଉଡ଼ିବି । ଏଇ ଫିରିଙ୍ଗି ଶାସକଙ୍କୁ ଦେଶରୁ ତଡ଼ିବି ।'' ସତକୁ ସତ ସେଦିନ ସେଇ କିଶୋରଟି ଦିନେ ବଡ଼ ହେଲା ।

ଆଇ.ଏସ୍‌ସି. ପାଶ୍ କରି ବି.ଏସ୍‌ସି ପଢ଼ିଲେ ବିଜୁ । ଏହି ସମୟରେ ସେ ପାଇଲଟ୍ ହେବାକୁ ଇଚ୍ଛା କଲେ । ନିଜର ଇଚ୍ଛା ମଧ୍ୟ ବାପାଙ୍କୁ ଜଣାଇଲେ । ସେତେବେଳକୁ ଲକ୍ଷ୍ମୀନାରାୟଣ ଅବସର ନେଇସାରିଥା'ନ୍ତି । ପାଇଲଟ୍ ଟ୍ରେନିଂ ପାଇଁ ବହୁତ ଟଙ୍କା ଦରକାର । ଅବସର ପରେ ଏତେ ଟଙ୍କା ଆସିବ କୁଆଡୁ ? ତେଣେ ଆବଶ୍ୟକ ଟଙ୍କା ବି ଯୋଗାଡ଼ କରିପାରୁ ନାହାନ୍ତି । କିଛି ଲୋକ କହିଲେ– ପୁଅ ଯଦି ଯୋଗ୍ୟର ହେବ ଟଙ୍କା ସାଇତିବା କାହାପାଇଁ । କାହାପାଇଁ ଏ ଘରଦ୍ୱାର ? ଏ ବସାଘରଟିକୁ ବିକିଦିଅ । ପୁଅକୁ ପାଠ ପଢ଼ାଅ । ପୁଅ ମଣିଷ ହେଲେ ପୁଣି ଘରଦ୍ୱାର କରିବନି ? କିଛିକ୍ଷଣ ଲକ୍ଷ୍ମୀନାରାୟଣଙ୍କ ଭାବନାକୁ ବି ଏହା ଆସିଥିଲା ।

ମାତ୍ର ପରମୁହୂର୍ତ୍ତରେ ଭାବିଲେ– ନା, ଏକମାତ୍ର ବସାଘରଟିକୁ ବିକିଦେଲେ ଚଳିବେ କେମିତି ? ପିଲାମାନେ ମୁଣ୍ଡ ଗୁଞ୍ଜିବେ କେଉଁଠି ? ଖୁବ ଚିନ୍ତାରେ ପଡ଼ିଯାଇଥା'ନ୍ତି । ଏତିକି ବେଳେ ଲକ୍ଷ୍ମୀନାରାୟଣଙ୍କ ପାଖକୁ ପାରଳା ମହାରାଜାଙ୍କଠାରୁ ଏକ ଦେଓ୍ୱାନୀ ଚାକିରିର ଡାକରା ଆସିଲା । ଦରମା ବାରଶହ ଟଙ୍କା । ପତ୍ନୀ ଆଶାଲତା ତାଙ୍କୁ ପୁଅ ପାଇଁ ଚାକିରି କରିବାକୁ ହେବ ବୋଲି ବୁଝାଇଲେ । ଲକ୍ଷ୍ମୀନାରାୟଣ ରାଜି ହୋଇଗଲେ । ପୁଅର ପଢ଼ିବାକୁ ଇଚ୍ଛା ଅଛି ଯେତେବେଳେ, ତା'କୁ ନିରାଶ କରିବେ କାହିଁକି ।

ଏଥର ବିଜୁଙ୍କ ଖୁସି କାହିଁରେ କ'ଣ । ବାପା ଦେଓ୍ୱାନୀ ଚାକିରିରେ ଯୋଗଦେଲେ । ବିଜୁ ବି ପାଇଲଟ ଟ୍ରେନିଂ ପାଇଁ ଚାଲିଗଲେ । ତାଙ୍କର ଇଚ୍ଛା ପାଖରେ

ଅର୍ଥର ଅଭାବ ହାର ମାନିଲା । ଟ୍ରେନିଂ ନେଉଥିବା ଅନ୍ୟ ସାଥୀମାନଙ୍କ ମଧ୍ୟରେ ସେ ଥିଲେ ଏକମାତ୍ର ଓଡ଼ିଆ । ଟ୍ରେନିଂରେ ବି ସେ ଖୁବ୍ କମ୍ ଦିନରେ ତାଙ୍କର ପାରଦର୍ଶିତା ଦେଖାଇଲେ । ମନରେ ଥିଲା ଅସୁମାରୀ ଆଶା । ଟ୍ରେନିଂ ସରିବା ପରେ ଚାକିରି ବି ମିଳିଗଲା । 'ଇଣ୍ଡିଆନ ଏୟାରୱେଜ୍'ରେ ସେ ନିଯୁକ୍ତି ପାଇଲେ । ଏହି ଖବର ଘର, ପରିବାର ଓ ବନ୍ଧୁବାନ୍ଧବ ଶୁଣିବା ପରେ ସମସ୍ତେ ଖୁସି ହୋଇଗଲେ । ଅତୀତରେ ବିଜୁ ନେଇଥିବା ଶପଥ ସତରେ ପରିଣତ ହେଲା । ପାଇଲଟ ହେବାର ଇଚ୍ଛା ତାଙ୍କର ପୂରଣ ହେଲା ।



## 'ବୁଲାନିଶା' ଓ ବାଘ ଦେଖା

ଖୁବ୍ ସାହସୀ ଥିଲେ ବିଜୁ । ତାଙ୍କର ଜୀବନ ଥିଲା ଖୁବ୍ ରୋମାଞ୍ଚକର । ସେ ସର୍ବଦା ଚ୍ୟାଲେଞ୍ଜକୁ ଭଲପାଉଥିଲେ । ଘାତ ପ୍ରତିଘାତକୁ ଖାତିର କରୁନଥିଲେ । ଦୁଃସାହସିକତାର ଦୀକ୍ଷା ନେଇଥିଲେ । ତାଙ୍କ ମୁଣ୍ଡରେ ଅଦ୍ଭୁତ ଖିଆଲ ସବୁ ପଶୁଥିଲା । ରେଭେନ୍ସା କଲେଜରେ ପଢୁଥିଲେ ବିଜୁ । ମନେପଡ଼ିଲା, ତାଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ କହୁଥିବା ତାଙ୍କ ଛାତ୍ର ଜୀବନର କଥା । ଲକ୍ଷ୍ମୀନାରାୟଣ ରେଭେନ୍ସାରେ ପଢୁଥା'ନ୍ତି । ପ୍ରଥମ ବର୍ଷ ପରୀକ୍ଷା ସରିଯାଇଥାଏ । ଏକ ଖରାଦିନ ସଞ୍ଜରେ କ'ଣ ମନହେଲା କେଜାଣି, ସମ୍ବଲପୁର ବାହାରିଲେ ଶଗଡ଼ରେ । ଏହି ଶଗଡ଼ ଯାତ୍ରା ବହୁ କଷ୍ଟ ହେଲେ ବି, ସେ ଏହାକୁ ବେଶ୍ ଉପଭୋଗ କରିଥିଲେ । ବିଜୁ ତାଙ୍କ ସାଙ୍ଗମାନଙ୍କୁ ଏକଥା କହିବା ବେଳେ, ସମସ୍ତଙ୍କ ଭିତରେ ଉତ୍ସାହ ଭରିଯାଉଥିଲା । ବିଜୁ ବାପାଙ୍କ ଯାତ୍ରାରେ ଅନୁପ୍ରାଣିତ ହୋଇ ଏମିତି ଏକ ଚ୍ୟାଲେଞ୍ଜ ନେବାକୁ ଚାହିଁଲେ । ଯୋଜନା କଲେ– ସାଇକେଲରେ ପେଶୱାର ଯାତ୍ରା କରିବେ ।

ଭ୍ରମଣ ଥିଲା ତାଙ୍କର ନିଶା । ତେଣୁ ବହୁ ସାଥୀଙ୍କ ସହ କଥା ହେଲେ । କେତେକ ରାଜି ହେଲେ ତ, ଆଉ କେତେକ ରାଜି ହେଲେନି । ଏଭଳି ଦୁର୍ଗମ ଅଭିଯାନକୁ ଡରି ଅନେକ ମନା କରିଦେଲେ । ହେଲେ ବିଜୁବାବୁ ଥିଲେ ଅଟଳ । ସେ ଯେମିତି ହେଲେ ଯିବେ । ଶେଷରେ କଟକ ସହର ମଣି ସାହୁ ଛକର ଭ୍ରମର ସାହୁ ଏବଂ ତିନିକୋଣିଆ ବଗିଚାର ଅମର ଦେଙ୍କୁ ସେ ସାଙ୍ଗ କଲେ । ୧୯୩୨ ମସିହା ମେ' ମାସ ୩୧ ତାରିଖ । ଖରାଛୁଟି ଥାଏ । ସାଇକେଲ ଧରି ବାହାରିପଡ଼ିଲେ ତିନି ବନ୍ଧୁ । ସାଇକେଲରେ ଆବଶ୍ୟକ ଜିନିଷପତ୍ର ବାନ୍ଧି କଟକରୁ ବାହାରି ପଡ଼ିଲେ ପେଶୱାର ଅଭିମୁଖେ । ଚକ୍ରଧରପୁର, ରାଞ୍ଚି, ହଜାରିବାଗ, ଆହ୍ଲାବାଦ, କାନପୁର, ଲକ୍ଷ୍ନୌ, ଆଲିଗଡ଼, ଆଗ୍ରା, ଦିଲ୍ଲୀ, ପାନିପଥ, ଜଲନ୍ଧର ଓ ଅମୃତସର ଦେଇ ପେଶୱାର ଯାଇଥିଲା ବିଜୁଙ୍କ ସାଇକେଲ ଯାତ୍ରା । ଦୁର୍ଗମ ରାସ୍ତାରେ କେତେ ବଣ, ଜଙ୍ଗଲ,

ପାହାଡ଼, ନଈ ଅତିକ୍ରମ କଲେ । ରାସ୍ତାରେ ବହୁ ବାଧାବିଘ୍ନର ସାମ୍ନା କରିଥିଲେ । ଏମିତି କି ମହାବଳ ବାଘ ସହ ବି ମୁହାଁମୁହିଁ ହୋଇଥିଲେ । ଏକ ଜଙ୍ଗଲ ରାସ୍ତାରେ ଯାଉଥିଲେ । ହଠାତ୍ ଏକ ମହାବଳ ବାଘ ରାସ୍ତା ଉପରେ ବସିଥିବାର ଦେଖିଲେ । ଏତେ ପାଖରେ ମହାବଳକୁ ଦେଖି ବିଜୁଙ୍କ ଦୁଇ ବନ୍ଧୁ ଗୋଟାପଣେ ଥରିବାକୁ ଲାଗିଲେ । କିନ୍ତୁ ଟିକେ ବି ଭୟ ନ ଥିଲା ବିଜୁଙ୍କ ମୁହଁରେ । ଓଲଟା ଦୁଇ ବନ୍ଧୁଙ୍କୁ ସାହସ ଦେଲେ । କହିଲେ– ''ଆରେ, ତୁମେମାନେ ବ୍ୟସ୍ତ ହୁଅନି । ବାଘ ନା ଫାଘ ! ତୁମେମାନେ ଖାଡ଼ା ଠିଆ ହୋଇରୁହ । ଟିକିଏ ବି ଏପଟ ସେପଟ ହେବନି । ଆଉ ବାଘ ଆଖିରେ ଆଖି ମିଶାଇ ଚାହଁ । ଦେଖିବା ବାଘ କ'ଣ କରୁଛି ।'' ଦୁଇ ବନ୍ଧୁଙ୍କ ପାଖରେ ଅନ୍ୟ କିଛି ଉପାୟ ନ ଥିଲା । ବାଧ୍ୟ ହୋଇ ସେମାନେ ବିଜୁଙ୍କ ପରାମର୍ଶ ମାନିଲେ । ବାଘ ଆଖିରେ ଆଖି ମିଳାଇ ଚାହିଁଲେ । ପାଞ୍ଚ ମିନିଟ୍ ଧରି ବାଘ ତାଙ୍କୁ ଚାହିଁରହିଲା । ପରେ ଜଙ୍ଗଲ ଭିତରକୁ ଚାଲିଗଲା । ଗୋଟେ ବଡ଼ ବିପଦ କଟିଗଲା ବୋଲି ମନେକଲେ ବିଜୁଙ୍କ ସାଙ୍ଗମାନେ । ବିଜୁଙ୍କ ସାହସ ଯୋଗୁଁ ମହାବଳ ବାଘ ହାବୁଡ଼ରୁ ରକ୍ଷା ପାଇଲେ ସେମାନେ । ଯେତେ ପ୍ରତିକୂଳ ପରିସ୍ଥିତି ଥିଲେ ବି ସେସବୁକୁ ଏଡ଼ାଇ ଆଗକୁ ବଢ଼ିବାର ଦୃଢ଼ ଇଚ୍ଛାଶକ୍ତି ଥିଲା ବିଜୁଙ୍କଠାରେ । ଯାହାକି ତାଙ୍କୁ ବହୁ କ୍ଷେତ୍ରରେ ସଫଳତାର ଶିଖରରେ ପହଞ୍ଚାଇ ପାରିଥିଲା ।



# ଛତା ପାଇଁ ପାଣିକୁ ଡେଇଁଲେ

ଉଣେଇଶ ତିରିଶି ମସିହାର କଥା । ବନ୍ୟାରେ ବରି ଅଞ୍ଚଳ ଉବୁଟୁବୁ ହେଉଥାଏ । ବହୁ ଧନ ଜୀବନ ନଷ୍ଟ ହୋଇଥାଏ । ଗାଁ ଗହଳିରେ ଅମାପ କ୍ଷତି ଘଟିଥାଏ । ଯୁଆଡ଼େ ଚାହଁ ପାଣି ଆଉ ପାଣି । ସବୁଆଡ଼େ ପାଣିର ସୁଅ ଛୁଟୁଥାଏ । ଲୋକେ ଖାଇବାକୁ ନ ପାଇ ଆଉଟୁ ପାଉଟୁ ହେଉଥା'ନ୍ତି । କିଏ ନଈ ବନ୍ଧରେ ତ କିଏ ଢିପ ଜାଗାରେ ଆଶ୍ରୟ ନେଇଥା'ନ୍ତି । ପୁଣି କାହାର ଡିହ ବାଡ଼ିର ଚିହ୍ନବର୍ଣ୍ଣ ନ ଥାଏ । ବନ୍ୟା ଅଞ୍ଚଳ ଖୁବ୍ ଦୁର୍ଗମ ହୋଇପଡ଼ିଥାଏ । କେଉଁଠି ପାଣିରେ ପଶି ତ କେଉଁଠି ଡଙ୍ଗାରେ ବସି ଯିବାକୁ ହୁଏ । ବନ୍ୟାପିଡ଼ିତଙ୍କ ଲାଗି ଗୋପବନ୍ଧୁଙ୍କ ଆଖିରେ ଲୁହ ଜକେଇ ଆସୁଥାଏ । ଜୀବନକୁ ପାଣିଛଡ଼ାଇ ସେ ଲୋକଙ୍କ ସାହାଯ୍ୟ ପାଇଁ ଆଗଭର ହୋଇଥା'ନ୍ତି ।

ଦିନେ ଗୋପବନ୍ଧୁ ଏହି ଅଞ୍ଚଳକୁ ଯିବାର ଥାଏ । ତାଙ୍କ ଉପରେ ଲୋକଙ୍କର ଖୁବ୍ ବିଶ୍ୱାସ । ସେ ସେତେବେଳେ ଲୋକଙ୍କ ପାଇଁ ଭଗବାନ ଥିଲେ । ଲୋକେ ଅସୁବିଧାରେ ଥିଲେ, ସେ ଡଙ୍ଗାରେ ଚୂଡ଼ା, ଚାଉଳ, ଗୁଡ଼ ଧରି ପହଞ୍ଚି ଯାଉଥିଲେ । ଦିନଦିନ ଧରି ଖାଇନଥିବା ଲୋକଙ୍କ ମୁହଁରେ ଆହାର ଦେଉଥିଲେ । ବରି ଅଞ୍ଚଳରେ ବନ୍ୟାଦୁର୍ଗତଙ୍କ ଦୁଃଖ ଶୁଣି ସେ ଥୟ ଧରିପାରିଲେନି । ଡଙ୍ଗାରେ ଲୋକଙ୍କ ପାଇଁ ଖାଇବା ଜିନିଷ ଧରି ସଅଳ ବାହାରିଲେ । ସାଙ୍ଗରେ କିଛି ସ୍ୱେଚ୍ଛାସେବୀ ଥା'ନ୍ତି । ସେମାନଙ୍କ ମଧ୍ୟରେ କେତେକ ଛାତ୍ର ମଧ୍ୟ ଥିଲେ । ସେମାନେ ବି ଲୋକଙ୍କୁ ସାହାଯ୍ୟ କରିବାକୁ ବାହାରିଥିଲେ । ବନ୍ୟାପାଣିରେ ନଈ ଉଛୁଳି ପଡୁଥାଏ । ଜୀବନକୁ ପାଣି ଛଡ଼େଇ ପିଲାଙ୍କ ସହ ଯାଉଥା'ନ୍ତି ଦାସେ ଆପଣ । ବର୍ଷା ଟିକେ ଛାଡ଼ି ଯାଇଥାଏ । ଟାଇଁଟାଇଁ ଖରା ମାରୁଥାଏ । ଗୋପବନ୍ଧୁ ତାଙ୍କ ଛତାଟି ମୁଣ୍ଡ ଉପରେ ଧରି ଡଙ୍ଗାର ମଙ୍ଗ ଉପରେ ବସିଥା'ନ୍ତି । ବନ୍ୟାଞ୍ଚଳରେ ଲୋକଙ୍କ ଦୁର୍ଦ୍ଦଶା କଥା ଭାବୁଥା'ନ୍ତି । କେତେ ଲୋକଙ୍କ ଘରଦ୍ୱାର ଭାସି ଯାଇଛି । ପାଣି ଘେରରେ ଖରା ବର୍ଷାରେ କେମିତି

ଥିବେ ? ବଡ଼ ଅସହାୟ ଭାବେ ବଞ୍ଚୁଥିବେ । ଏମିତି କେତେ କ'ଣ ମୁଣ୍ଡରେ ପଶୁଥାଏ । ହଠାତ୍ ଦଲକାଏ ପବନ ଉଡ଼ାଇ ନେଲା ଗୋପବନ୍ଧୁଙ୍କ ଛତା । ବନ୍ୟା ପାଣିର ସୁଅରେ ତାହା ଭାସିଯାଉଥାଏ ।

ଏହା ଦେଖିଲା ଡଙ୍ଗା ମଙ୍ଗରେ ବସିଥିବା ବାର ବର୍ଷରୁ କମ୍ କିଶୋରଟିଏ । ସିଧା ଡେଇଁପଡ଼ିଲା ନଈକୁ । ସମସ୍ତେ ଆବାକାବା ହୋଇ ରହିଁଥା'ନ୍ତି । ଅକାତକାତ ପାଣି । କେଉଁଠି କେଉଁଠି ପାଣି ଭଉଁରୀ ଖେଳୁଥାଏ । ଡଙ୍ଗା ଭିତରେ ଢୁରି ପଡ଼ିଯାଇଥାଏ । କିନ୍ତୁ ସାହସୀ ପିଲାଟିର ସେସବୁ ପ୍ରତି ଡର ନ ଥିଲା । ଏକମାତ୍ର ଲକ୍ଷ୍ୟ ଥିଲା, ପାଣିରେ ଭାସିଯାଉଥିବା ଛତାଟି ଆଣି ଗୋପବନ୍ଧୁଙ୍କୁ ଦେବ । ମନା କରିବା ସତ୍ତ୍ୱେ ସେ ପହଁରିପହଁରି ଧରିପକାଇଥିଲା ଛତାଟିକୁ । ଦାସେ ଆପଣେ କିଛି ସମୟ ପାଇଁ ଡରିଯାଇଥିଲେ । ଏଡ଼େ ଟିକିଏ ପିଲା, ପୂରନ୍ତା ନଈକୁ ଡେଇଁପଡ଼ିଲା । ପିଲାଟି କିନ୍ତୁ ବନ୍ୟାପାଣିକୁ ଭ୍ରୁକ୍ଷେପ ନ କରି ଗୋଟିଏ ହାତରେ ଛତା ଧରି, ଆର ହାତରେ ପାଣି ବାଡ଼େଇ ବାଡ଼େଇ ଡଙ୍ଗା ପାଖକୁ ଚାଲି ଆସିଲା । ଡଙ୍ଗାର ପାଖ ହେବାରୁ ନାଉରୀ କାତଟି ବଢ଼ାଇଦେଲା । କାତ ଧରି କିଶୋରଟି ଡଙ୍ଗାକୁ ଲାଗି ଆସିବା ପରେ କେତେକ ମିଶି ତା'କୁ ଡଙ୍ଗା ଉପରକୁ ଉଠାଇ ଆଣିଲେ । ଗୋପବନ୍ଧୁଙ୍କ ପିଣ୍ଡରେ ପ୍ରାଣ ପଶିଲା । ସେ ଆଶ୍ୱସ୍ତ ହେଲେ । ପିଲାଟିକୁ ପଚାରିଲେ– ତୋ ନାଁ କ'ଣ ? କିଶୋରଟି ଉତ୍ତର ଦେଲା– ବିଜୟାନନ୍ଦ । ପୁଣି ପଚାରିଲେ– ତୋ ବାପା ନାଁ କ'ଣ ? କିଶୋରଟି ଉତ୍ତର ଦେଲା– ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ଆମ ଘର କଟକ । ଗୋପବନ୍ଧୁ ହଠାତ୍ କହିଲେ– ଆରେ ! ତୁ ଲକ୍ଷ୍ମୀନାରାୟଣର ପୁଅ । ବାପାରେ ! ତୋତେ କିଏ କହିଥିଲା ଛତା ଆଣିବାକୁ ? ଛତାଟି ଭାସି ଯାଇଥିଲେ କ'ଣ ଅସୁବିଧା ହୋଇଥା'ନ୍ତା ? ଜୀବନଠାରୁ ଛତାଟା କ'ଣ ମୂଲ୍ୟବାନ ? ଏମିତି ଦୁଃସାହସିକ କାମ କାହିଁକି କଲୁ ? ଯଦି ସାମାନ୍ୟ ଛତାଟି ଆଣିବାକୁ ଯାଇ ତୋର ଜୀବନ ଚାଲିଯାଇଥା'ନ୍ତା, ମୁଁ ତୋ ବାପା ଆଗରେ କେମିତି ମୁହଁ ଦେଖାଇଥା'ନ୍ତି । କି ଉତ୍ତର ଦେଇଥା'ନ୍ତି ତାଙ୍କୁ ? ପିଲାଟି ଉତ୍ତର ଦେଲା– ଏହା ଯଦି ଛତାଟିଏ ନ ହୋଇ, ଆମ ଭିତରୁ କେହି ପାଣିରେ ପଡ଼ିଯାଇଥା'ନ୍ତେ, ତେବେ କ'ଣ ଆମେ ଚୁପ୍ ହୋଇ ଦେଖିଥା'ନ୍ତେ ? ଚାହୁଁଚାହୁଁ ତା'କୁ ମରିବାକୁ ଦେଇଥା'ନ୍ତେ । ଯାହା ମୋର କର୍ତ୍ତବ୍ୟ, ତାହା ମୁଁ କରିଛି । ଆପଣ ଆଦୌ ବ୍ୟସ୍ତ ହୁଅନ୍ତିନି । ମୋର କିଛି ବି ହୋଇନଥା'ନ୍ତା ।

ବନ୍ୟାପାଣିରୁ ଛତାଟି ଆଣିବାକୁ ପାଣିକୁ ଡେଇଁବା ପୂର୍ବରୁ କିଶୋରଟି ଏହା ହିଁ ଭାବିଥିବ ଯେ, ଏତେ ବଡ଼ଲୋକ ଗୋପବନ୍ଧୁ ଖରାତରାରେ ଦୁନିଆ ବୁଲୁଛନ୍ତି । ଲୋକଙ୍କ ବିପଦ ଆପଦରେ ସାହାଯ୍ୟ କରୁଛନ୍ତି । ବନ୍ୟା ଦୁର୍ଗତଙ୍କ ପାଖକୁ ଯାଇ ସେମାନଙ୍କ ସୁଖଦୁଃଖ ବୁଝୁଛନ୍ତି । ରିଲିଫ ବାଣ୍ଟୁଛନ୍ତି । ତାଙ୍କ ସହ ଏପରି ସମୟରେ କିଏ ଥା'ନ୍ତୁ ନଥା'ନ୍ତୁ ତାଙ୍କ ଛତାଟି ତାଙ୍କର ଏକମାତ୍ର ଭରସା ଆଉ ସମ୍ବଳ । ଛତାଟି ଭାସିଗଲେ ସେ ଏକା ହୋଇଯିବେ । ତେଣୁ ଏ ଛତା ସାମାନ୍ୟ ନୁହେଁ । ଏତେ ବଡ଼ ଲୋକଙ୍କ ହାତର ଛତାଟି ସାମାନ୍ୟ ହେବ କାହିଁକି ? ଗୋପବନ୍ଧୁ ବିଜୟାନନ୍ଦର ନିର୍ଭିକ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ତା' ମୁହଁକୁ ଚାହିଁଲେ । ଆଉ ଆର୍ଶୀବାଦ କରି କହିଲେ– ତୁ ଏମିତି ସାହସୀ ହୁଅ, ବଡ଼ ମଣିଷ ହୁଅ । ସବୁ କ୍ଷେତ୍ରରେ ବିଜୟୀ ହୁଅ । ଓଡ଼ିଆ ଜାତିର ନାଁ ରଖ । ଗୋପବନ୍ଧୁଙ୍କ ସେଦିନର ସେଇ କଥା କେଇପଦ କିଶୋରଟିର ଜୀବନ ବଦଳାଇ ଦେଲା । ତା'ର ଏହି ଦୁଃସାହସିକତା ଅନ୍ୟମାନଙ୍କ ତୁଣ୍ଡରେ ପ୍ରଚାର ହୋଇଗଲା । ସମସ୍ତେ ତା'କୁ ସାବାସି ଦେଲେ ।



# ଡାଳି ମାଙ୍କୁଡ଼ି

ଘର ତିଆରି କାମ ଚାଲିଛି । ସମସ୍ତେ ବ୍ୟସ୍ତ । ମିସ୍ତ୍ରୀ, ଶ୍ରମିକମାନେ ଖଟୁଛନ୍ତି । ଘରଲୋକେ ଯେଝା କାମରେ ଲାଗିଛନ୍ତି । ପାଖରେ ବରଗଛଟିଏ । ଛୋଟଛୋଟ ପିଲା ଏଠି ଡାଳିମାଙ୍କୁଡ଼ି ଖେଳନ୍ତି । ଆଜି ତ ଆଉ ସହରରେ ବରଗଛଟିଏ ବି ଦେଖିବାକୁ ମିଳୁନି, କିନ୍ତୁ ସେତେବେଳେ କଟକ ସହରରେ ଅନେକ ସ୍ଥଳେ ବଡ଼ବଡ଼ ଗଛ ଦେଖିବାକୁ ମିଳୁଥିଲା । ଗଛରେ ଏ ଡାଳରୁ ସେ ଡାଳ ଡେଇଁ ପିଲାଏ ଖେଳୁଥିଲେ । ପୁଣି ବର ଓହଳ ଧରି ଦୋଳି ଖେଳିବା ଓ ଝୁଲିବାରେ ସେମାନଙ୍କର ଢେର ଆନନ୍ଦ । ଏକଦା କିଶୋର ବିଜୟାନନ୍ଦ ଏହି ବରଗଛରେ ଡାଳିମାଙ୍କୁଡ଼ି ଖେଳୁଥାଏ । ବର ଓହଳ ଧରି ଖେପା ମାରୁଥାଏ ଏ ଡାଳୁ ସେ ଡାଳ । ହଠାତ୍ କ'ଣ ହେଲା କେଜାଣି, ପିଲାଟି ଛିଟିକି ପଡ଼ିଲା କିଛି ଦୂରକୁ । ଏହା ଦେଖି ଲୋକେ ଧାଇଁଆସି ପିଲାଟିକୁ ଉଠାଇ ନେଲେ । ମା' ଆଶାଲତା ପୁଅର ଏ ଅବସ୍ଥା ଦେଖି କାନ୍ଦି ଉଠିଲେ । ଆଜି ଦିନଟା ଭଲନାହିଁ, କାହିଁକି ସେ ପିଲାକୁ ପଦାକୁ ଛାଡ଼ିଲେ ବୋଲି ନିଜକୁ ଧିକ୍କାର କଲେ । କିନ୍ତୁ ବାପା ଲକ୍ଷ୍ମୀନାରାୟଣ ବାବୁ ତାଙ୍କୁ ବୁଝାଇଲେ– ତୁମେ ବ୍ୟସ୍ତ ହୁଅନି । ତା'ର ସେମିତି କିଛି ହୋଇନି । ଇଏ ତ ସାଧାରଣ ଘଟଣା । ମାମୁଲି ଗୋଟେ ଦୁର୍ଘଟଣା । ଜୀବନରେ ଏମିତି କେତେକେତେ ଦୁର୍ଘଟଣା ଆସିବ । ସବୁକୁ ଟପି ଆଗକୁ ଯିବାକୁ ହେବ । ଏତିକିରେ ଏମିତି ଛାନିଆ ହେଲେ ଚଳିବ ? ଆଜି ଟିକେ ପଡ଼ିଯାଇଛି ବୋଲି ତୁମେ କାନ୍ଦୁଛ । ଦେଖ, ସେ ପୁଣି ଉଠି ଖେଳିବ । ଆହୁରି ଅଧିକ ଆଗକୁ ଯିବ । ଆକାଶକୁ ବି ଛୁଇଁଯିବ ।

କିନ୍ତୁ ମା' ମନ କ'ଣ ଏଇ କଥାରେ ଥୟ ପଡ଼ିବ, ପୁଅର ଏପରି ଘଟଣାରେ ସେ ଚୁପ୍ ରହିବେ କେମିତି । ବିଜୁ କିନ୍ତୁ ଖୁବ ସାହସୀ । ମାତ୍ର କିଛି ସମୟ ବିଶ୍ରାମ ପରେ ସେ ପୁଣି ଠିକ୍‌ଠାକ୍ ହୋଇଗଲା । ପୁଣି ଡାଳିମାଙ୍କୁଡ଼ି ଖେଳିବାକୁ ତୟାର । ବାପା ତା ମନରେ ସାହସ ଦେଇଛନ୍ତି । ସେ ବା' ଡରି ଯିବ କାହିଁକି ? ସେ ଦିନର

ସେଇ ସାହସ ତାଙ୍କୁ ଉଚ୍ଚକୁ ଉଠିବାର ପ୍ରେରଣା ଦେଇଥିଲା । ବହୁ ଘଟଣା ଭିତରେ ଆଗକୁ ଯିବାର ମନୋବଳ ସେ ପାଇଥିଲେ ପିଲାଦିନୁ । ତେଣୁ ସବୁ କ୍ଷେତ୍ରରେ ପ୍ରତିବନ୍ଧକ ଟପି ଆଗକୁ ଯିବାର ପ୍ରୟାସ କରୁଥିଲେ ସେ ।



# ଡରନ୍ତୁନି, ଅପରେସନ୍ କରନ୍ତୁ !

ସାତ ବର୍ଷ ବୟସ । ୧୯୨୩ ମସିହାର କଥା । ଦିନେ ହଠାତ୍ ବିଜୁଙ୍କ ପେଟରେ ପ୍ରବଳ କଷ୍ଟ ହେଲା । ଏମିତି ଯନ୍ତ୍ରଣା ହେଲା ଯେ, ଯାହା ସମ୍ଭାଳି ହେବନି । କିନ୍ତୁ ସେ ଏହି କଷ୍ଟ ସମ୍ପର୍କରେ ବାପା କି ମା'ଙ୍କୁ କିଛି କହିଲେ ନାହିଁ । ଭାବିଲେ– ଏମିତି ତ ଆଗରୁ ପେଟ କାଟେ, ପୁଣି ଭଲ ହୋଇଯାଏ । ଏଥର ବି ସେମିତି ଭଲ ହୋଇଯିବ । ମାତ୍ର ବହୁ ସମୟ ଯନ୍ତ୍ରଣା ଭୋଗିବା ପରେ ଏହା ଅତ୍ୟଧିକ ହେବାରୁ ଏକଥା ବାପାଙ୍କୁ ଜଣାଇଲେ । ଘରେ କାନ୍ଦ ବୋବାଳି ପଡ଼ିଗଲା । ସମସ୍ତେ ବ୍ୟସ୍ତ ହୋଇ ଉଠିଲେ । ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଡେରି ନ କରି ବିଜୁଙ୍କୁ ନେଇ ଡାକ୍ତରଖାନା ଗଲେ । ଡାକ୍ତର ତାଙ୍କୁ ପରୀକ୍ଷାକରି କହିଲେ– ଆପେଣ୍ଡିସାଇଟିସ, ଫାଟିଯିବାରୁ ଏମିତି ଯନ୍ତ୍ରଣା ହେଉଛି । ତୁରନ୍ତ ଅପରେସନ କରିବାକୁ ପଡ଼ିବ । ନଚେତ୍ ଅବସ୍ଥା ଆହୁରି ଉଦ୍‌ବେଗଜନକ ହୋଇପଡ଼ିବ । ଅପରେସନ ନ ହେଲେ ଜୀବନ ପ୍ରତି ବିପଦ ଅଛି ।

ଲକ୍ଷ୍ମୀନାରାୟଣ ବାବୁ ଚିନ୍ତିତ ହୋଇପଡ଼ିଲେ । ତେବେ ଅପରେସନ ପାଇଁ ସବୁ ବନ୍ଦୋବସ୍ତ କଲେ । ଅପରେସନ ପୂର୍ବରୁ ଡାକ୍ତର କହିଲେ– ବିନା ନିଶ୍ଚେତକରେ ଅପରେସନ କରିବାକୁ ପଡ଼ିବ । ବହୁତ କଷ୍ଟ ହେବ, ନଚେତ୍ ଉପାୟ ନାହିଁ । ପୁଅକୁ ପଚାରନ୍ତୁ– ସେ କଷ୍ଟ ସମ୍ଭାଳି ପାରିବ ତ ! ଡାକ୍ତରଙ୍କ କଥା କାନଡେରି ଶୁଣୁଥିଲେ ବିଜୁ । ବିଳମ୍ବ ନ କରି ଚଟାପଟ ଉତ୍ତର ଦେଲେ– ମୁଁ ଠିକ୍‌ଠାକ୍ ଅଛି, ମୋର କିଛି ବି ଅସୁବିଧା ହବନି । ଡରନ୍ତୁନି ! ଅପରେସନ୍ କରନ୍ତୁ । ସେଦିନ ସାତ ବର୍ଷର ଶିଶୁଟିକୁ ଡାକ୍ତର ମ୍ୟାଡ଼ର ଓ' ନିଲ ବିନା ନିଶ୍ଚେତକରେ ଅପରେସନ କରିଥିଲେ । ଅପରେସନ ବି ସଫଳ ହେଲା । ହେଲେ, ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ପିଲାଟିର ଏହି ସାହସ ଦେଖି । ଏଡ଼େ ଟିକିଏ ପିଲା, ଏମିତି କଷ୍ଟ ସହିନେଲା । ସେ ଦିନ ସେହି ଗୋରା ସର୍ଜନ ଜଣକ ବାଳକଟିକୁ ଚାହିଁ କହିଲେ– ଏହି ପିଲାଟିକୁ ଈଶ୍ୱର ବଞ୍ଚାଇଦେଲେ । ଏହି ବାଳକଟି ବଡ଼ ହେଲେ ନିଶ୍ଚୟ ଖୁବ୍ ଦୁର୍ଦ୍ଧର୍ଷ ହେବ ।



# ଗୋରା ସିପାହୀଙ୍କୁ ଟେକାମାଡ଼

ସ୍କୁଲରୁ ଫେରୁଥା'ନ୍ତି ବିଜୁ । କଟକ ବାରବାଟୀ ଗଡ଼ଖାଇ ନିକଟରେ ଜାମୁକୋଳି ଗଛଟିଏ ଥାଏ । ଗଛରେ ଜାମୁକୋଳି ପାଚି ଭର୍ତ୍ତି ହୋଇଥାଏ । ବିଜୁ ସାଙ୍ଗମାନଙ୍କୁ କହିଲେ— ଆଜି ଜାମୁକୋଳି ଖାଇବାକୁ ଯିବା । ସାଙ୍ଗମାନେ ବି ବିଜୁଙ୍କ କଥାରେ ପଡ଼ି ଜାମୁକୋଳି ଗଛ ଆଡ଼କୁ ଚାଲିଲେ । ଦୂରରୁ ଦେଖିଲେ ଗଛ ତଳେ ବସିଥା'ନ୍ତି କେତେକ ଗୋରା ସିପାହୀ । ସେତେବେଳେ ପୋଲିସ କଥା ଶୁଣିଲେ ସମସ୍ତଙ୍କ ଭିତରେ ଡର । ହେଲେ ବିଜୁ ଡରିବାର ପିଲା ନୁହଁନ୍ତି । ଏ ଫିରିଙ୍ଗିବାଲା କରିବେ କ'ଣ ? ତାଙ୍କୁ ଡରି ଆମେ କୋଳିଖିଆ ଛାଡ଼ିଦେବୁ ନା କ'ଣ ? ତାହା କେବେ ହୋଇ ପାରିବନି । ଭାଙ୍ଗିଯିବ ପଛେ ନଇଁବ ନାହିଁ । ତେଣୁ ଗୋଟିଏ ଉପାୟ ପାଞ୍ଚି ଦୂରରୁ ଥାଇ ଛକି ଛକି ମାରିଲେ ଗୋଟେ ଟେକା । ଏହା ଜଣେ ସିପାହୀ ଉପରେ ପଡ଼ିଲା । ବିଚରା ଟେକା ମାଡ଼ ଖାଇ ଗୋରା ସିପାହୀ ରାଗ ପଞ୍ଚମ । ନଜର ପଡ଼ିଗଲା ଗୋଟେ ପିଲା ଉପରେ । ଏଇ ହିଁ ଟେକା ମାରିଛି । ସିପାହୀ ଧାଇଁଲା ବିଜୁଙ୍କ ପଛରେ । ତେଣେ ବିଜୁ ବିଜୁଳି ପରି ଧଇଁସଇଁ ହୋଇ ଆସି ଘରେ ହାଜର ।

ବାପା ପଚାରିଲେ— ଆରେ, ଏମିତି କାହିଁକି ଦଉଡ଼ିକି ଆସିଲୁ । କିଏ ଗୋଡ଼ାଇଲା କି ? ବିଜୁ ବାପାଙ୍କ ଆଗରେ ସବୁକଥା ମାନିଗଲା । ବାପା କହିଲେ— ସେମାନେ ତ ଫିରିଙ୍ଗି କୁକୁର । ତାଙ୍କୁ ଡରି ତୁ ଚୋରଙ୍କ ପରି ଧାଉଁଛୁ କାହିଁକି ? ବିଜୁ ଏଥର ବାପାଙ୍କଠାରୁ ସାହସ ପାଇଗଲା । ଛାଡ଼ିବ କାହିଁକି ? ପୁଣିଥରେ ଛକି ଟେକା ମାରିଲା ପୋଲିସ୍‌କୁ । ଏଥର କିନ୍ତୁ ଧରାପଡ଼ିଗଲା । ପୋଲିସ୍ ତାକୁ ଧରିନେଲା । ତେବେ ବିଜୁ ନାବାଳକ ଥିବାରୁ, ତାକୁ ବିଶେଷ କିଛି ଦଣ୍ଡ ଦେଇନଥିଲା । କେବଳ ବେତରେ ଦଶ ପାହାର ଦେଇ ଛାଡ଼ିଦେଲେ । ଆଉ କହିଲେ, ''ଏମିତି କାମ ଆଉ କେବେ କରିବୁନି ।'' ହେଲେ ବିଜୁ କ'ଣ ମାନିବା ପିଲା । ଗୋରା ପୋଲିସ୍‌କୁ ଟେକା ମାରିଥିବାରୁ ତାକୁ ଗଡ଼ ଜିତିବାପରି ଲାଗୁଥିଲା । ଜାମୁକୋଳି ଖାଇଲା ନାହିଁ ସତ, ହେଲେ ପୋଲିସ୍‌କୁ ତ ପାନେ ଦେଇଛି । ସେଦିନ ତାର ଖୁସି କହିଲେ ନସରେ ।

■

# ହାତରେ ଆଉଁସି ରକ୍ତ ପୋଛିଦେଲେ ଗାନ୍ଧି

ସ୍ୱାଧୀନତା ଆନ୍ଦୋଳନ ତେଜିଥାଏ । ଗାନ୍ଧିଜୀ ବିଭିନ୍ନ ସ୍ଥାନରେ ସଭାସମିତି କରି ଦେଶବାସୀଙ୍କୁ ବ୍ରିଟିଶ୍ ବିରୋଧରେ ଲଢ଼ିବାକୁ ଆହ୍ୱାନ ଦେଉଥା'ନ୍ତି । ତାଙ୍କ କଥାରେ ଲୋକେ ବିଭିନ୍ନ ସ୍ଥାନରେ ଏକାଠି ହୋଇଥା'ନ୍ତି । ଆନ୍ଦୋଳନରେ ସାମିଲ ହେଉଥା'ନ୍ତି । ଏକଦା ଗାନ୍ଧି ଓଡ଼ିଶା ଆସି କଟକ ସ୍ୱରାଜ ଆଶ୍ରମରେ ରହୁଥା'ନ୍ତି । ତାଙ୍କୁ ଦେଖିବାକୁ ଲୋକଙ୍କ ସୁଅ ଛୁଟୁଥାଏ । ଛୋଟରୁ ବଡ଼ ସମସ୍ତେ ଚାଲିଥା'ନ୍ତି ସ୍ୱରାଜ ଆଶ୍ରମ ଆଡ଼କୁ । ବିଜୟାନନ୍ଦଙ୍କ ଇଚ୍ଛା ବି ଟିକେ ଗାନ୍ଧିଙ୍କୁ ଦେଖିବେ । ତାଙ୍କୁ ସେତେବେଳେ ମାତ୍ର ଦଶ ବର୍ଷ ବୟସ । କଲଜିଏଟ୍ ସ୍କୁଲର ଛାତ୍ର । ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ପୀଠ 'ସ୍ୱରାଜ ଆଶ୍ରମ' ସ୍କୁଲଠାରୁ ଅଳ୍ପବାଟ । ଗାନ୍ଧି କଟକ ଆସିଛନ୍ତି ଯେତେବେଳେ, ଏହା ତ ତାଙ୍କ ପାଇଁ ଗୋଟେ ସୁଯୋଗ । ସେ କେମିତିକା ଲୋକ ? କାହିଁକି ଏତେ ଲୋକ ତାଙ୍କୁ ଦେଖିବାକୁ ଧାଇଁଛନ୍ତି । ଆଶ୍ରମ ନିକଟରେ ଖୁବ୍ ଭିଡ଼ ଲାଗିଥାଏ । କିଶୋର ବିଜୁ ତାଙ୍କ ଭାଇଙ୍କ ସାଙ୍ଗରେ ମହାତ୍ମାଙ୍କୁ ଦେଖିବାକୁ ସ୍ୱରାଜ ଆଶ୍ରମକୁ ଯାଇଥିଲେ । ଭିଡ଼କୁ ନିୟନ୍ତ୍ରଣ କରିବା ପାଇଁ ପୁଲିସକୁ ନାକେଦମ୍ ହେବାକୁ ପଡୁଥିଲା । ଲୋକଙ୍କୁ ଘଉଡ଼ାଇବା ପାଇଁ ବେଳେବେଳେ ପୋଲିସ ଲାଠି ପ୍ରହାର କରୁଥିଲେ । ତଥାପି ଏହାକୁ ଭ୍ରୂକ୍ଷେପ ନ କରି ବିଜୟାନନ୍ଦ ଚାହୁଁଥା'ନ୍ତି ଗାନ୍ଧିଙ୍କ ପାଦ ଛୁଇଁବେ । ଏତେ ବଡ଼ ମହାତ୍ମାଙ୍କ ସାନ୍ନିଧ୍ୟ ପାଇବେ । ଚାରିପଟେ ପୋଲିସ ଜଗିଥା'ନ୍ତି । ବହୁ ଲୋକଙ୍କୁ ଗାନ୍ଧିଙ୍କ ପାଖକୁ ଛାଡୁନଥା'ନ୍ତି । ବିଜୟାନନ୍ଦ କିନ୍ତୁ ଛାଡ଼ିବାର ପିଲା ନୁହେଁ । ଯାହା ହୋଇଯାଉ ପଛେ, ଗାନ୍ଧିଙ୍କୁ ଦେଖିବେ ! ପୋଲିସ ତାଗିଦ୍ ନ ମାନି ଆଗକୁ ଚାଲିଲେ । ଦେଖାଯିବ ପୋଲିସ କ'ଣ କରିବ କରୁ ! ବିଜୟାନନ୍ଦ ଗାନ୍ଧିଙ୍କ ପାଦ ଛୁଇଁବା ପାଇଁ ଅଗ୍ରସର ହେଲେ ।

କିଶୋର ବିଜୁ ଅନ୍ୟମାନଙ୍କ ତୁଳନାରେ ଅପେକ୍ଷାକୃତ ଡେଙ୍ଗା ଥିଲେ । ଡେଙ୍ଗାମୁଣ୍ଡରେ ଠେଙ୍ଗା ଭଳି ଏତିକିବେଳେ ବ୍ରିଟିଶ୍ ପୋଲିସ ହାଇଗ୍ରୀଭ ସାହେବ

ପିତ୍ତଳ ଗୋବ ଲାଗିଥିବା ଲାଠିରେ ବିଜୟାନନ୍ଦଙ୍କ ମୁଣ୍ଡକୁ ପିଟିଦେଲେ । ଧାର ଧାର ରକ୍ତ ଛୁଟିଲା ମୁଣ୍ଡରୁ । ମୁଣ୍ଡ ଫାଟିଯିବା ସତ୍ତ୍ୱେ ସେ ମୁଣ୍ଡକୁ ହାତରେ ଜାବୁଡ଼ି ଧରି ଗାନ୍ଧିଙ୍କ ପାଖକୁ ଯିବାକୁ ଚାହିଁଲେ । ମାତ୍ର ବ୍ରିଟିଶ୍ ପୋଲିସର କିଶୋରଟି ପ୍ରତି ଏପରି ନିର୍ମମ ପ୍ରହାର ଦେଖି ଉପସ୍ଥିତ ସେଠାର ଲୋକେ ପାଟିତୁଣ୍ଡ ଆରମ୍ଭ କରିଦେଲେ । ଉତ୍ତେଜନା ବଢ଼ିଲା । ଖବର ପାଇ ଗାନ୍ଧିଜୀ ବସିବା ଜାଗାରୁ ଉଠିଆସିଲେ । ଦେଖିଲେ– ଛୋଟ ପିଲାଟିର ଏ ଅବସ୍ଥା ! କିଏ ଏମିତି କଲା ? ସବୁ ବୁଝିବା ପରେ ବ୍ରିଟିଶ୍ ପୋଲିସର ନିନ୍ଦା କଲେ । ଏପରି କରିବା ଠିକ୍ ନୁହେଁ ବୋଲି ଚେତାଇଦେଲେ । ନିଜ ହାତରେ କିଶୋରଟିର ମୁଣ୍ଡରୁ ରକ୍ତ ପୋଛିଦେଲେ । ତା'କୁ ଆଉଁସି ପକାଇ ତାଙ୍କୁ ସାନ୍ତ୍ୱନା ଦେଲେ । ଆଖି ତାଙ୍କର ଛଳଛଳ ହୋଇଗଲା । ବିଜୁ ସେଦିନ ଗାନ୍ଧିଙ୍କୁ ପାଖରେ ପାଇ ତାଙ୍କ ଆଶୀର୍ବାଦ ନେଇ ଖୁବ୍ ଖୁସି ହୋଇଯାଇଥିଲେ । ଏମିତି ସୌଭାଗ୍ୟ କାହାର ଅଛି ଯିଏ ଗାନ୍ଧିଙ୍କ ସ୍ପର୍ଶ ପାଇବ ? ତେବେ ସେଦିନ ଏହି ଘଟଣାରେ ମନେମନେ ବ୍ରିଟିଶ୍ ପୋଲିସ୍ ଉପରେ ରାଗିଯାଇଥିଲେ ବିଜୟାନନ୍ଦ । ଏହି ଘଟଣା ତାଙ୍କ ମୁଣ୍ଡରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ତେବେ ମନେମନେ ଶପଥ ନେଇଥିଲେ ଯେ, ସେ ଦିନେନା ଦିନେ ଏହାର ପ୍ରତିଶୋଧ ନେବେ । ଗୋରା ପୋଲିସ ଅତ୍ୟାଚାରର ଜବାବ ଦେବେ । ଯେଉଁ ପୋଲିସ ତାଙ୍କୁ ବାଡ଼େଇଛି, ସେ ପୁଣି ତାଙ୍କୁ ସଲାମ କରିବ !

ବିଜୁ ତାଙ୍କ ପ୍ରତି ଏଭଳି ଘଟଣା ମନେ ରଖିଥା'ନ୍ତି । ଆଉ ସୁଯୋଗ ଖୋଜୁଥା'ନ୍ତି କେତେବେଳେ ହାଇଗ୍ରୀଭ ସାହେବ ହାବୁଡ଼େ ପଡ଼ିବେ । ସେ ନିଜ ପ୍ରତିଜ୍ଞାକୁ କାର୍ଯ୍ୟରେ ପରିଣତ କରିବେ । ଏଥର ଆଉ ରକ୍ଷା ନାହିଁ । ଯେମିତି ହେଲେ ପାନେ ଦେବେ ତାଙ୍କୁ । ଯାହା ସେ ଚାହୁଁଥିଲେ, ସେମିତି ଏକ ଅପୂର୍ବ ସୁଯୋଗ ଆସି ପହଞ୍ଚିଲା । ସେତେବେଳକୁ ସେ ବଡ଼ ହୋଇଯାଇଥା'ନ୍ତି । କଲେଜରେ ଏକ ହକି ମ୍ୟାଚ ହେଉଥାଏ । ଗୋଟିଏ ପଟେ ଥା'ନ୍ତି ବିଜୁ, ଆଉ ଆରପଟେ ହାଇଗ୍ରୀଭ ଖେଳୁଥିଲେ । ବିଜୁଙ୍କର ମନେ ପଡ଼ିଲା ସେଦିନ ଗାନ୍ଧିଙ୍କୁ ଦେଖିବାକୁ ଯାଇ ମାଡ଼ ଖାଇବା କଥା । ଛକି ଛକି ଥିଲେ । ଖେଳ ଭିତରେ ହକିଷ୍ଟିକ୍‌ରେ ହାଇଗ୍ରୀଭଙ୍କ ଗୋଡ଼କୁ ଲକ୍ଷ୍ୟକରି ଖୁବ୍ ଜୋର୍‌ରେ ଏକ ନିର୍ଘାତ ପ୍ରହାର ଦେଲେ । ହାଇଗ୍ରୀଭ ସାହେବ ପଡ଼ିଆରେ ତଳେ ପଡ଼ିଗଲେ । ଗୋଡ଼ ଛୋଟା ହୋଇଗଲା । ପରେ ତାଙ୍କୁ ଆଉ ଦେଖିବାକୁ ମିଳିଲାନି । ସେ ଚାକିରି ଛାଡ଼ି ନିଜ ଦେଶକୁ ପଳାଇଲେ । ବିଜୁ ଜିତିଗଲେ ସେଦିନ । ତା'ଙ୍କ ଖୁସି କହିଲେ ନସରେ ।

ବଡ଼ହେବା ପରେ ମଧ୍ୟ ବିଜୁଙ୍କ ମନରୁ ସେଦିନର ସେହି କଥା ଲିଭିନଥିଲା । ଗୋରା ପୋଲିସ ଦିନେ ନା ଦିନେ ତାଙ୍କୁ ସଲାମ କରିବ । ଏକଥା ସେ ମନେରଖିଥା'ନ୍ତି । ସେତେବେଳେ ଦେଶର ସ୍ୱାଧୀନତା ସଂଗ୍ରାମୀଙ୍କୁ ବିଭିନ୍ନ ସାହାଯ୍ୟ ସହଯୋଗ କରୁଥା'ନ୍ତି ବିଜୁ । କିନ୍ତୁ ଏକଦା ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନ ଦ୍ୱାରା ବନ୍ଦୀ ହୋଇଥିବା ଗୋରା ବ୍ରିଟିଶ୍ ପରିବାରଙ୍କୁ ତାଙ୍କ କବଳରୁ ଉଦ୍ଧାର କରିଥିଲେ । ସରକାରୀ ପାଇଲଟ ଥିବାରୁ ସେ ଏହି କାର୍ଯ୍ୟ କରିଥିଲେ । ଏଥିରେ ତାଙ୍କର ଖୁସି ହେବାର କିଛି ନ ଥିଲା । କିନ୍ତୁ ବ୍ରିଟିଶରମାନେ ଖୁସି ହୋଇ ତାଙ୍କୁ ସମ୍ମାନୀତ କରିବା ସହ ତାଙ୍କ କାର୍ଯ୍ୟକୁ ପ୍ରଶଂସା କରି 'ଦୁର୍ଦ୍ଧଶ' ବୋଲି କହିଥିଲେ । ସେଦିନ ବ୍ରିଟିଶରମାନଙ୍କ ଏପରି ସମ୍ମାନରେ ସେ ବିସ୍ମିତ ହୋଇନଥିଲେ, ବରଂ ନିଜ ଶପଥ ପୂରାହେଲା ବୋଲି ଭାବିନେଇଥିଲେ ।



# ସାନ ଭାଇଙ୍କ ବେଶ ବଦଳାଇଲେ

ରେଭେନ୍‌ସା କଲେଜରେ ପଢୁଥିଲେ ଦୁଇଭାଇ ବିଜୁ ଓ ସିଜୁ । ପାଠପଢ଼ା ସହ ଖେଳକୁଦରେ ବିଜୁଙ୍କର ଖୁବ୍ ଆଗ୍ରହ । ସବୁବେଳେ ସବୁ ଖେଳାଳିଙ୍କଠାରୁ ସେ ଆଗରେ ଥା'ନ୍ତି । ଏକଦା ମୁହଁ ସଞ୍ଜବେଳ । ବିଜୁଙ୍କ ସାନଭାଇ ସିଜୁ ଖେଳସାରି ଘରକୁ ଫେରୁଥାଏ । ସେତେବେଳେ କଟକ ସହରରେ ଗୋରା ପୋଲିସର ଖୁବ୍ ପ୍ରାଦୁର୍ଭାବ ଥାଏ । ରାସ୍ତାରେ ଆସୁଥିବା ବେଳେ ଏସ୍.ପି.ଙ୍କ ହାବୁଡ଼ରେ ପଡ଼ିଲେ ଏଇ ପିଲାମାନେ । ଏସ୍.ପି. ରାସ୍ତାର ଗୋଟିଏ କଡ଼ରେ ଯିବାକୁ ନିର୍ଦ୍ଦେଶ ଦେଲେ । ପିଲାମାନେ କିନ୍ତୁ ଗୋରା ପୋଲିସଙ୍କୁ ଖାତିର କରୁନଥିଲେ । ସେମାନେ ରାସ୍ତାରେ ନିଜ ଇଚ୍ଛାରେ ଏଣେତେଣେ ଚାଲିଲେ । ଏସ୍.ପି. ସାହେବ ହଠାତ୍ ରାଗିଯାଇ ଚିହିଁକି ଉଠିଲେ । ପିଲାଙ୍କୁ ଗୋଡ଼େଇ ଗୋଡ଼େଇ ଲାଠିରେ ପିଟିବାକୁ ଲାଗିଲେ । ସିଜୁ ବା ଡରିବେ କାହିଁକି ? ହାତରେ ଧରିଥିବା କ୍ରିକେଟ ବ୍ୟାଟ୍‌ରେ ଏସ୍.ପି.ଙ୍କୁ ନିର୍ଘାତ ପାହାରଟାଏ ବସାଇଲେ । ଏସ୍.ପି. ଧରିବାକୁ ଚେଷ୍ଟା କରୁଥିବାବେଳେ, ସେ ଦଉଡ଼ି ସେ ଜାଗାରୁ ଛୁ ! ପରେ ପରେ ସିଜୁର ସାଙ୍ଗମାନେ ବି ଡିଆଁମାରି ଚମ୍ପଟ ।

ସେଦିନ ପୋଲିସ, ଯେତେ ଖୋଜିଲେ ବି ସେମାନଙ୍କୁ ପାଇଲାନି । ପରଦିନ ଏସ୍.ପି.ଙ୍କୁ ମାଡ଼ ଖବର ଚରିଆଡ଼େ ପ୍ରଚାର ହୋଇଗଲା । କଲେଜରେ ବି ହଲ୍ଲା ହୋଇଗଲା । ଅଧ୍ୟାପକ ଓ ଅନ୍ୟ ପିଲାମାନେ ଭୟଭୀତ ହୋଇପଡ଼ିଲେ । ବିଜୁଙ୍କ କାନରେ ଏକଥା ପହଞ୍ଚିଲା । ପୋଲିସକୁ ସିଜୁ ମାଡ଼ ମାରିଥିବା ଜାଣି ସେ ଖୁସି ତ ହେଲେ, ଆଗକୁ କ'ଣ ହେବ ସେ ନେଇ ଉପାୟ କଲେ । ସିଜୁଙ୍କୁ ଡାକି ଆଣିଲେ । ତାଙ୍କର ଚୁଟି କାଟି ଛୋଟଛୋଟ କରିଦେଲେ । ବେଶ ପୋଷାକ ସବୁକିଛି ବଦଳାଇ ଦେଲେ । ଗତକାଲିର ଚେହେରା ଠାରୁ ଆଜିର ଚେହେରା ପୂରା ଅଲଗା ହୋଇଗଲା । ସବୁ ପିଲାଙ୍କୁ ଡକାହେଲା । ଏସ୍.ପି. ସାହେବ ତନ୍ନ ତନ୍ନ କରି ସବୁ ପିଲାଙ୍କୁ ଦେଖିଲେ ।

ହେଲେ ତାଙ୍କୁ ବାଡ଼େଇଥିବା ପିଲାର ଚେହେରା କାହା ସହ ମିଶିଲାନି । ସିଜୁ ଦଣ୍ଡରୁ ତ ମୁକ୍ତି ପାଇଲା, ତା' ସହ ତା'ର ସାହସ ବି ବଢ଼ିଗଲା । ବିଜୁଙ୍କ ବୁଦ୍ଧିକୁ ସେଦିନ ସମସ୍ତେ ତାରିଫ୍ କଲେ । ଗୋରାମାନଙ୍କୁ କିପରି କଳେବଳେ କୌଶଳରେ ଜିତିହୁଏ ଓ ବୋକା ବନେଇ ଦିଆଯାଏ, ସେଦିନ ବିଜୁ ଏହା ଶିଖାଇଥିଲେ ପିଲାଙ୍କୁ ।



# ଝିଅ ଘରକୁ ଯାଇଥିଲି

ଅନୁଗୁଳଠାରୁ ଅଣତିରିଶ କିଲୋମିଟର ଦୂର ତାଳଚେରର କଣିହାଁ । ଏକ ସାଧାରଣ ସଭାରେ ଯୋଗଦେବାକୁ ଯାଇଥିଲେ ବିଜୁବାବୁ । ସେ ଏନ୍.ଟି.ପି.ସି. ଅତିଥି ଭବନରେ ରହୁଥିଲେ । ସେଠାରେ ସେ ମଧ୍ୟାହ୍ନ ଭୋଜନ କଲେ । ପରେ ପରେ କାହାକୁ କିଛି ନ କହି ହଠାତ୍ କୁଆଡ଼େ ବାହାରିଗଲେ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଯେ, ବିଜୁବାବୁଙ୍କ ଏମିତି ଅଘଟନକ ଗସ୍ତ କୁଆଡ଼କୁ ? ପରେ ଜଣାପଡ଼ିଲା ଯେ, ବିଜୁବାବୁ କଣିହାଁ ବ୍ଲକ ଛେଳିଆ ଗାଁର ସଞ୍ଜୁରାଣୀ ସାହୁଙ୍କ ଘରକୁ ଯାଇଛନ୍ତି । ସେଦିନ ବିଜୁବାବୁ ସଞ୍ଜୁରାଣୀଙ୍କ ଘରେ ପହଞ୍ଚିବା କ୍ଷଣି ସଞ୍ଜୁଙ୍କ ଗୋଡ଼ ତଳେ ଲାଗି ନ ଥିଲା । ଏତେବଡ଼ ଲୋକଙ୍କ ପାଦ ଆଜି ତା' ଘରେ ପଡ଼ିଲା । ହେଲେ କ'ଣ ଖାଇବାକୁ ଦେବ ? ତା'ର ଏ ଗରିବ ଘରେ କ'ଣ ବା ଅଛି ଦେବାକୁ । ସେ ସେଦିନ ନିଜ ହାତରେ ଶାଗ ଖରଡ଼ି ବାଢ଼ି ଦେଇଥିଲେ ବିଜୁବାବୁଙ୍କୁ । ସେଇ ଖାଇବାରେ ବିଜୁବାବୁ ଖୁବ୍ ତୃପ୍ତି ପାଇଥିଲେ । ସଞ୍ଜୁଙ୍କ ହାତର ଶାଗ ପଖାଳ ଏମିତି ଥିଲା ଯେ, ବେଶ୍ କିଛି ବର୍ଷ ଧରି ସେ ଏହା ଝୁରି ହେଉଥିଲେ ।

୧୯୯୮ରେ ବିଜୁବାବୁ ପୂର୍ବତନ ଉପ-ମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନଙ୍କ ପ୍ରତିମୂର୍ତ୍ତିର ଲୋକାର୍ପଣ କରିବାକୁ ସେହି ଅଞ୍ଚଳକୁ ଯାଇଥିଲେ । ସେଠାରେ ସେ ସାନତ୍ରିବିଡ଼ା ଗାଁରୁ ଫେରିବା ବେଳେ ପ୍ରବଳ ବର୍ଷା ହେଲା । ବିଜୁବାବୁ ସଞ୍ଜୁରାଣୀଙ୍କ ଘରେ ଅଳ୍ପ କିଛି ସମୟ ଅଟକିଗଲେ । ସେଠାରେ ବିଶ୍ରାମ ନେଉଥିବାବେଳେ ସଞ୍ଜୁରାଣୀ ପୁଣି ବିଜୁବାବୁଙ୍କୁ ପଖାଳ ଖାଇବାକୁ ଡାକିଥିଲେ । ସଞ୍ଜୁରାଣୀଙ୍କ ଆଦରକୁ ଏଡ଼େଇ ପାରିନଥିଲେ ସେ । ସେ ଦିନ ବି ସଞ୍ଜୁରାଣୀ ବାଢ଼ି ଦେଇଥିଲେ ପଖାଳ । ଏହାର ଦୁଇବର୍ଷ ପରେ ପୁଣି ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ସଞ୍ଜୁରାଣୀଙ୍କ ଘରକୁ ଯାଇଥିଲେ । ତାଙ୍କ ପାଇଁ ପ୍ରସ୍ତୁତ ସୁସ୍ୱାଦୁ ମଧ୍ୟାହ୍ନ ଭୋଜନ ଛାଡ଼ି ସେ ସଞ୍ଜୁରାଣୀଙ୍କ ହାତରୁ ପଖାଳ ଖାଇ ଫେରିଥିଲେ । ପରେ ଯେତେବେଳେ ଭାଷଣ ଦେଲେ,

ସେତେବେଳେ ସେ କହିଥିଲେ ଯେ, ''ଦୀର୍ଘ ଦୁଇବର୍ଷ ହେଲା ମୁଁ ମୋ ଝିଅ ଘରକୁ ଯାଇନଥିଲି । ମନ ହେଲା ତା' ଘରଆଡ଼େ ଟିକେ ବୁଲି ଆସିଲି ।''

ଗୋଟିଏ ସାଧାରଣ ଓଡ଼ିଆ ପରିବାରରେ ଶାଗ ପଖାଳ ଖାଇ ଦୀର୍ଘବର୍ଷ ଧରି ସେହି ସ୍ମୃତିକୁ ମନଭିତରେ ଉଜ୍ଜୀବିତ ରଖିଥିଲେ ବିଜୁବାବୁ । ପରେ ନିଜ ହାତରୁ ଟଙ୍କା ଖର୍ଚ୍ଚ କରି ସଞ୍ଜୁରାଣୀଙ୍କ ବାହାଘର ମଧ୍ୟ କରାଇଥିଲେ । ବିଜୁବାବୁଙ୍କ ମୃତ୍ୟୁର କିଛି ବର୍ଷ ପରେ ତାଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ପୁଣି ବାପାଙ୍କୁ ମନେପକାଇଥିଲେ ସଞ୍ଜୁରାଣୀ ।

''ଏଇ ବାଟେ ଗାଡ଼ିରେ ଯାଉଥିଲେ ବିଜୁବାବୁ । ମୁଁ ଓ ଆମ ଗାଁ ଲୋକେ ତାଙ୍କୁ ଦେଖିବାକୁ ଠିଆ ହୋଇଥିଲୁ । ମୋତେ ହଠାତ୍ ଦେଖି କହିଲେ– 'ଖାଇବାକୁ ଦେବୁ!' ମୁଁ ମୁଣ୍ଡ ଟୁଙ୍ଗାରି ହଁ' କଲି । ବାପା ଘରେ ନ ଥିଲେ । ମୂଲ ଲାଗିବାକୁ ଯାଇଥିଲେ । ମା' ଛେଳି ଚରାଇବାକୁ ଯାଇଥିଲା । ମୁଁ ହାତରେ ରୋଷେଇ ସାରି ଧାନ ଗଣ୍ଡେ ବସାଇଥିଲି । ସେ ଫେରିଲା ବେଳେ ଆମ ଘରକୁ ପଶି ଆସିଲେ । ଘର ପାଖରେ ଏତେ ଲୋକ ଜମା ହୋଇଥିବା ଶୁଣି ମା' ଝିଅର କ'ଣ ହେଲା ଭାବି କାନ୍ଦିକାନ୍ଦି ଘରକୁ ଆସିଲା । ଲୋକେ ତା' ମା'ଙ୍କୁ କହିଲେ, 'ତୁ କାହିଁକି କାନ୍ଦୁଛୁ ? ତୋ ଘରେ ମୁଖ୍ୟମନ୍ତ୍ରୀଙ୍କ ପାଦ ପଡ଼ିଛି ।' ବିଜୁବାବୁ ମୋ ହାତରେ ଶାଗ ପଖାଳ ଖାଇଲେ । ମୁଁ ତାଙ୍କୁ ଖୁଆଇ ଦେଲି । ଏତିକିବେଳେ ମୁଁ ଭାବୁଥିଲି ମୁଁ କେଉଁ ଠାକୁରଙ୍କୁ ଖୁଆଉଛି । ସେ ମୋତେ ଝିଅ କଲେ । ମୁଁ ବାପା ବୋଲି ଡାକିଲି । ବାପ ଘରକୁ ଦୁଇଥର ଯାଇଛି । ଖୁବ୍ ଭଲ ପା'ନ୍ତି । ଆମର ଖାଇବା, ପିଇବା ସବୁ କଥା ବୁଝନ୍ତି । ପଇସାପତ୍ର ଦେଇ ଘରକୁ ପଠାନ୍ତି । ସେମିତିକା ବାପା ମୁଁ ଆଉ କେଉଁଠୁ ପାଇବି ।''

ଇଏ ଥିଲା ସଞ୍ଜୁରାଣୀଙ୍କ ମୁହଁରେ ଦରଦଭରା କାହାଣୀ । ଯେଉଁଥିରେ ବିଜୁବାବୁଙ୍କର ସାଧାରଣ ଲୋକଙ୍କ ସହ ସମ୍ପର୍କ କେତେ ନିବିଡ଼, ତାହା ସହଜରେ ଜଣାପଡ଼ିଥାଏ ।



# ସାପ ପାଇଁ ହେଲା ଷ୍ଟିଲ ପ୍ଲାଣ୍ଟ

ରାଉରକେଲାରେ ଷ୍ଟିଲ ପ୍ଲାଣ୍ଟ ହେବ । ଓଡ଼ିଶାରେ ଶିଳ୍ପର ପ୍ରଗତି ହେବ । ଏହି ସ୍ୱପ୍ନ ଥିଲା ବିଜୁବାବୁଙ୍କର । ସେ ଥିଲେ ସ୍ୱପ୍ନର ସୌଦାଗର । ଏକଦା ଜର୍ମାନର ଏକ ପ୍ରତିନିଧି ଦଳ ଓଡ଼ିଶା ଆସିଥିଲେ । ସେମାନେ ଚାହୁଁଥିଲେ ବିହାର (ବର୍ତ୍ତମାନର ଝାଡ଼ଖଣ୍ଡ)ର ଏକ ଅଞ୍ଚଳରେ ଷ୍ଟିଲ ପ୍ଲାଣ୍ଟ ହେଉ । ତେଣୁ ସେମାନେ ଓଡ଼ିଶାକୁ ସେତେଟା ଗୁରୁତ୍ୱ ଦେଉନଥିଲେ । ବିଜୁବାବୁ ସେଇ ପ୍ରତିନିଧିଦଳର ତିନିଜଣଙ୍କୁ ରାଉରକେଲା ନେଇଗଲେ । ବିଜୁବାବୁ, ତିନି ଜର୍ମାନୀ ଓ ନୀଳମଣି ରାଉତରାୟ ରାଉରକେଲାରେ ପହଞ୍ଚି ସେଠାର ସର୍କିଟ ହାଉସରେ ରହିଲେ । ପ୍ଲାନଟା କାଢ଼ି ବିଜୁବାବୁ ତାଙ୍କୁ ବତାଉଥିଲେ କେଉଁଠୁ ଆଇରନ୍ ଓର୍ ଆସିବ ? କେଉଁଠୁ ପାଣି ଆସିବ ? ଇତ୍ୟାଦି... ।

ଏମିତି ଅନେକ କଥା ବୁଝାଉଥିବାବେଳେ ଗୋଟେ ବଡ଼ ସାପ ଘର ଭିତରକୁ ଅଚାନକ ପଶିଆସିଲା । ଜର୍ମାନ ଲୋକ ତିନିଜଣ ଖୁବ୍ ଡରିଗଲେ । ଭୟଭୀତ ହୋଇ ଖଟିଆ ଉପରକୁ ଉଠିଗଲେ, କିନ୍ତୁ ବିଜୁବାବୁ ସାପଟାକୁ ଡରିବେ କାହିଁକି ? ନିର୍ଭୟରେ ସେଠାରେ ଥିବା ଖଟର ମଶାରୀବାଡ଼ାକୁ ଭାଙ୍ଗିଦେଲେ । ଦୁଇପଟୁ ସାପଟିକୁ ଏଇ ମଶାରୀବାଡ଼ାରେ ଧରି ବାହାରକୁ ନେଇ ଫୋପାଡ଼ି ଦେଇ ଆସିଲେ । ତିନି ଜର୍ମାନୀଙ୍କର ଜୀବନ ପଶିଲା । ପୂର୍ବରୁ ଡ୍ରଇଁ ହୋଇଥିବା ପ୍ଲାନଟିକୁ ଗୁଡ଼ାଇ ନିରାଶରେ ଫେରିବାକୁ ବସିଥିବା ଏହି ତିନିଜଣ ଏପରି ଘଟଣା ପରେ ଆଉ କିଛି ସମୟ ବସିଲେ ।

ବିଜୁବାବୁ ତାଙ୍କୁ ପଚାରିଲେ– ''କ'ଣ ହେଲା ? ଆପଣମାନେ କ'ଣ ନିଷ୍ପତ୍ତି ନେଲେ ?''

ସେମାନେ ସେଇ ଗୋଟିଏ କଥା କହିଲେ– ''ଏଠିକା ଲୋକେ ଯଦି ଏତେ ସାହସୀ, ତାହା ହେଲେ ଷ୍ଟିଲ ପ୍ଲାଣ୍ଟ ରାଉରକେଲାରେ ହିଁ ହେବ ।''

ଏଥିର ବିଜୁବାବୁଙ୍କ ମୁହଁରେ ହସ ଫୁଟିଲା । ଏହି ଘଟଣା ବହୁଲୋକ ଜାଣିନଥିବା ବେଳେ, ନୀଳମଣି ରାଉତରାୟ ଏହା ଦିଲ୍ଲୀପ ରାୟଙ୍କୁ କହିଥିଲେ । ଦିଲ୍ଲୀପ ରାୟ ଏକଥା ଯେତେବେଳେ ବିଜୁବାବୁଙ୍କୁ ପଚାରିଥିଲେ– ବିଜୁବାବୁ କହିଲେ, ''ତୁ ଏକଥା କେମିତି ଜାଣିଲୁ ।'' ଦିଲ୍ଲୀପ ଉତ୍ତର ଦେଲେ, ''ଅଜାଙ୍କଠାରୁ ଶୁଣିଛି ।'' ସେ କହିଲେ, ''ହଁ, ଏମିତି ଗୋଟେ କୌତୂହଳ ଘଟଣା ଘଟିଥିଲା । ସେଇ ସାପଟି ଯୋଗୁଁ ହିଁ ରାଉରକେଲାରେ ଷ୍ଟିଲ ପ୍ଲାଣ୍ଟ ହୋଇପାରିଲା ।''



# ତୋ ପୁଅକୁ ମୋତେ ଦେ'

ନୂଆନୂଆ ଡିଭିଡି ପ୍ଲେୟାର ଆସିଥାଏ । ଘରେ ଡିଭିଡି କିଣି 'ସିଲ୍‌ସିଲା' ଫିଲ୍ମ ଦେଖୁଥା'ନ୍ତି ପରିବାର ଲୋକେ । ଅନେକ ସମୟରେ ପଡ଼ୋଶୀ ଲୋକେ ବି କବାଟ ବାଡ଼େଇ ଟିଭି ଦେଖିବାକୁ ଆସନ୍ତି । ସେଦିନ ଟିଭି ଦେଖୁଥିବାବେଳେ ହଠାତ୍ କେହି ଜଣେ କବାଟ ବାଡ଼େଇଲା । ଦିଲ୍ଲୀପ ରାୟ ସେତେବେଳକୁ ଯୁବକ ଥା'ନ୍ତି । ସେ ଘରୁ ଉଠିଆସି ବିରକ୍ତିରେ କବାଟ ଖୋଲି ଦେଲେ । ହେଲେ, କବାଟ କେଉଁ ପାଖ ପଡ଼ୋଶୀ ଲୋକ ବାଡ଼ାଉ ନ ଥିଲେ; ଖୋଦ୍ ବିଜୁବାବୁ ଛିଡ଼ା ହୋଇଥିଲେ ସାମନାରେ । ହଠାତ୍ ରାଗ ଥଣ୍ଡା ହୋଇଗଲା । ସେ ବିଜୁବାବୁଙ୍କୁ ଭିତରକୁ ଡାକିନେଲେ । ସେତେବେଳକୁ ରାତି ୮ଟା । ରାଉରକେଲାକୁ ବିଜୁବାବୁ ଆସି ଆକସ୍ମିକଭାବେ ତାଙ୍କ ଘରକୁ ପଶି ଆସିବା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କଲା । କେହି କିଛି ବୁଝିପାରିଲେନି, ସେ କାହିଁକି ଆସିଛନ୍ତି । ଅବଶ୍ୟ ଦିଲ୍ଲୀପଙ୍କ ବାପାଙ୍କ ସହ ତାଙ୍କର ସଂପର୍କ ଥିଲା । ମା' ବି ଜାଣିଥିଲେ । ଅଜା ନୀଳମଣି ରାଉତରାୟ ତ ତାଙ୍କର ସହଯୋଗୀ । ତେଣୁ ଭାବିଲେ, ସେହି ହିସାବରେ ରାଉରକେଲା ଆସିଥିବା ବେଳେ ବୁଲିଆସିଛନ୍ତି । ତେବେ ବ୍ୟକ୍ତିଗତ ଭାବେ ଦିଲ୍ଲୀପ ତାଙ୍କୁ କେବେ ଭେଟି ନାହାନ୍ତି । ସେତେବେଳେ କଲେଜ ପଢ଼ା ସାରି ବ୍ୟବସାୟରେ ପଶୁଥିଲେ ଦିଲ୍ଲୀପ ।

ତେବେ ଏଇ ଆକସ୍ମିକ ଦେଖାରେ ସେ ଦିଲ୍ଲୀପଙ୍କ ମା'ଙ୍କୁ କହିଲେ– ''ତୋତେ ଗୋଟେ ଜିନିଷ ମାଗିବାକୁ ଆସିଛି । ତୋ ପୁଅକୁ ମୋତେ ଦେ । ମୁଁ ତାକୁ ରାଜନୀତିକୁ ଆଣିବାକୁ ଚାହୁଁଛି । ସେ ଏ ଜିଲ୍ଲାଟା ପୂରା ବୁଝିବ ।'' ଦିଲ୍ଲୀପଙ୍କ ମା' ଅବାକ୍ ହୋଇ ଚାହିଁଲେ । ତାଙ୍କ କଥାରେ ରାଜି ହେଲେନି । ଦିଲ୍ଲୀପ, ବି ମନା କରିଦେଲେ । ଅଜାଙ୍କୁ ପଚାରିବାରୁ ସେ ବି ମନାକଲେ । କିନ୍ତୁ ବିଜୁବାବୁ କ'ଣ ଛାଡ଼ିବା ଲୋକ । ତା' ପରଦିନ ସକାଳେ ଦିଲ୍ଲୀପଙ୍କୁ କହିଲେ– ''ମୋ ସାଙ୍ଗରେ ଚାଲ, ଅନୁଗୁଳ ଯିବା । ସେଠି ଗୋଟେ ପବ୍ଲିକ୍ ମିଟିଂ ଅଛି । ତୁ ଇଚ୍ଛା କଲେ ରାଜନୀତିରେ ପଶିବୁ,

ନହେଲେ ନାହିଁ ।'' ଦିଲ୍ଲୀପ ବିଜୁବାବୁଙ୍କ ସହ ଅନୁଗୋଳ ଗଲେ । ସେଠାରେ ଗୋଟିଏ ମଞ୍ଚରେ ବିଜୁବାବୁଙ୍କ ସହ ବସିଲେ । ପରେ ତାଙ୍କୁ ବାଟରେ ଓ ଘରେ ଅନେକ ବୁଝାଇଲେ । ଶେଷରେ ଦିଲ୍ଲୀପ ରାଜି ହେଲେ । ସେହି ସମୟକୁ ଇନ୍ଦିରା ଗାନ୍ଧୀଙ୍କର ମୃତ୍ୟୁ ହୋଇଥାଏ । ହାଓ୍ୱା କଂଗ୍ରେସ ସପକ୍ଷରେ ଥାଏ । ପାର୍ଲାମେଣ୍ଟ ପାଇଁ ନିର୍ବାଚନ ଲଢ଼ି ହାରିଲେ ଦିଲ୍ଲୀପ । ପରେ ବିଧାନସଭା ପାଇଁ ପୁଣି ଯେତେବେଳେ ବିଜୁବାବୁ ଦିଲ୍ଲୀପଙ୍କୁ କହିଲେ, ସେତେବେଳକୁ ସେ ଅନିଚ୍ଛା ପ୍ରକାଶ କଲେ । କାରଣ ପୂର୍ବରୁ ପାର୍ଲାମେଣ୍ଟ ପାଇଁ ଲଢ଼ି ହାରିଯାଇଥିବାରୁ, ସେ ପୂରା ଭାଙ୍ଗି ପଡ଼ିଥିଲେ । ବିଜୁବାବୁ ପୁଣି ସାହସ ଦେଇ କହିଲେ– ''ପଛକଥା ଭୁଲିଯା' । ସେଇଟା କିଛି ନୁହେଁ । ତୁ ଆସେମ୍ବ୍ଲି ପାଇଁ ଠିଆ ହ ।'' ଏଥର ନିର୍ବାଚନରେ ଦିଲ୍ଲୀପ ଜିତିଲେ । ବିଜୁବାବୁ ତାଙ୍କ ଇଚ୍ଛାହିଁବା ଅନୁସାରେ ନେତାଟିଏ ତିଆରି କଲେ । ସେଇଠୁ ଆରମ୍ଭ ହୋଇଥିଲା ଦିଲ୍ଲୀପ ରାୟଙ୍କ ରାଜନୀତି କ୍ୟାରିୟର ।



# 'ରିଜାଇନ୍' ନୁହେଁ, 'ଲିଅନ୍'ରେ

୧୯୯୫ ମସିହା ନିର୍ବାଚନ ପୂର୍ବର କଥା । ଅଧ୍ୟାପିକା ସିପ୍ରା ମଲ୍ଲିକଙ୍କ ପାଖକୁ ହଠାତ୍ ଦିନେ ବିଜୁବାବୁଙ୍କର ଫୋନ୍ ଆସିଲା । ସିପ୍ରା ସ୍ୱର୍ଗତଃ ପ୍ରହ୍ଲାଦ ମଲ୍ଲିକଙ୍କ ଝିଅ । ଅପରପ୍ରାନ୍ତରୁ ବିଜୁବାବୁ କହୁଥିଲେ– "ଆ' । ଆଜି ଆମେ ଦୁହେଁ ମିଶି ଲଞ୍ଚ କରିବା ।" ବିଜୁବାବୁ ଫୋନ୍ କରିଛନ୍ତି ଯେତେବେଳେ ନ ଯିବାର ବାଟ ନାହିଁ । ସିପ୍ରା ଠିକ୍ ସମୟରେ ତାଙ୍କ ନିକଟରେ ପହଞ୍ଚିଲେ । ଦୁହେଁ ମିଶି ଲଞ୍ଚ କଲେ । ଖାଇବାବେଳେ ଲେଗ୍‌ପିସ୍ ବାଛି, ସିପ୍ରାଙ୍କୁ ଖାଇବାକୁ ଦେଉଥିଲେ । ଆଉ କଅଁଳେଇ କହିଲେ– "ମୁଁ ତୋତେ ଆସେମ୍ବ୍ଲି ଭିତରେ ଦେଖିବାକୁ ଚାହେଁ । ଏଥର ମୁଁ ଭାବୁଛି– ତୁ ପଟ୍ଟାମୁଣ୍ଡାଇରୁ ଲଢ଼ିବୁ ।" ସିପ୍ରା ଭାବି ନ ଥିଲେ ଯେ, ବିଜୁବାବୁ ତାଙ୍କୁ ରାଜନୀତିକୁ ଆସିବା କଥା କହିବେ । ବାପାଙ୍କର ପ୍ରିୟନେତା ଥିଲେ ବିଜୁବାବୁ । ପିଲାଦିନେ ବୋଉ ତାଙ୍କୁ କହିଥିଲା, ବିଜୁଙ୍କ ବୀରତ୍ୱ କଥା । ସେ କିପରି ଭବିଷ୍ୟଦ୍ରଷ୍ଟା ଥିଲେ, ତା' ମଧ୍ୟ ସେ ଜାଣିଥିଲେ । ତେବେ ସେ ଅପ୍ରତ୍ୟାଶିତ ଭାବେ ଏକଥା ପଚାରିବେ ସେ ଜାଣି ନ ଥିଲେ । ତେବେ ସିପ୍ରା କହିଲେ– "ନା, ମୁଁ ତ ଅଧ୍ୟାପିକା ଅଛି । ରାଜନୀତିକୁ କାହିଁକି ଆସିବି ?" ବିଜୁବାବୁ ପୁଣି କହିଲେ– "ଆରେ, ତୋ ବାପାର ଋଣ ଶୁଝାଇବାର ଅଛି !" ସିପ୍ରା କହିଲେ– "ଯଦି ମୁଁ ହାରିଯାଏ, କ'ଣ କରିବି ? ଗୋଟେ ପଟେ ଚାକିରି ହରାଇଥିବି, ଆଉ କୋଉ କୂଳକୁ ହେବିନି ।" ବିଜୁବାବୁ କହିଲେ– "ହାରିଗଲେ ଚିନ୍ତା ନାହିଁ । ରାଜନୀତିରେ ହାର ଜିତ୍ ତ ଅଛି । ହାରିଗଲେ ମହିଳା କମିଶନ ବା ଅନ୍ୟ କୋଉଠି ଚେୟାରମ୍ୟାନ କରି ରଖିଦେବି ।" ସିପ୍ରା ବି ଛାଡ଼ିବାର ନାଇଁ । କଥାକୁ କଥା ସଜାଡ଼ି ରଖୁଥା'ନ୍ତି । ଏଥର କହିଲେ– "ଯଦି ଆପଣଙ୍କ ଦଳ ହାରିଯାଏ, ତେବେ ମୋ ଅବସ୍ଥା କ'ଣ ହେବ ?" ଏଥର ବିଜୁବାବୁ ଜୋର୍‌ରେ ହସିଲେ । କହିଲେ– "ତୁମର ତାହାହେଲେ ଏତେ ଦୂରଦୃଷ୍ଟି ।" ବିଜୁବାବୁଙ୍କ ଭଳି ଲୋକଙ୍କୁ ସେଦିନ ସିପ୍ରା ପ୍ରଶ୍ନବାଣରେ ପୋତି ପକାଇଥିଲେ । ଏପରି ପ୍ରଶ୍ନରେ କିଛି ସମୟ ବିଜୁବାବୁ ଚୁପ୍

ରହିଲେ । ପୁଣି କହିଲେ– ''ଯଦି ଭୋଟରେ ବାଦ୍ ଯାଅ, ତେବେ ପୁଣି ଯଦି ଚାକିରିରେ ପ୍ରବେଶ ନିୟମ କରି ଦିଆଯାଏ ?'' ଏଥର ସିପ୍ରା କେବଳ ବିଜୁବାବୁଙ୍କ ମୁହଁକୁ ଚାହୁଁଥାଏ । ଇଏ କେଡ଼େ ବଡ଼ କଥା । ତାଙ୍କ ପାଇଁ କ'ଣ ରାଜ୍ୟର ଆଇନ ବି ବଦଳିଯିବ !

ସେଦିନର କଥାଥିଲା ସେତିକି । ବିଜୁବାବୁ ହୃଦୟଙ୍ଗମ କଲେ ମହିଳାମାନଙ୍କର ଅସହାୟତା । ବିଜୁବାବୁ ରାଜ୍ୟରେ ଆଇନ ବଦଳାଇଲେ । ସାମାଜିକ କାମ ଓ ଲୋକଙ୍କ ସେବାର ଉଦ୍ଦେଶ୍ୟ ରଖି କେହି ମହିଳା ଯଦି ରାଜନୀତିକୁ ଆସେ, ସେ ରିଜାଇନ ନ କରି 'ଲିଅନ୍'ରେ ଦୁଇବର୍ଷ ପାଇଁ ଯାଇ ପୁଣି ଚାକିରିକୁ ଫେରିପାରିବେ । ଦୂରଦୃଷ୍ଟା ବିଜୁବାବୁଙ୍କର ଏପରି ନିଷ୍ପତ୍ତି ରାଜ୍ୟର ମହିଳାଙ୍କ ପାଇଁ ରାଜନୀତିରେ ପ୍ରବେଶର ଉନ୍ମୁକ୍ତ ବାଟ ଖୋଲି ଦେଇଥିଲା ।



# ଟୋକାଟାଏ ହେଇଛୁ, ପ୍ରଧାନମନ୍ତ୍ରୀଙ୍କୁ ଭେଟିବାକୁ ଡରୁଛୁ !

୧୯୯୭ ମସିହା । ବାରିପଦାଠାରେ ନିଗମାନନ୍ଦଙ୍କ ଧର୍ମ ସମ୍ମିଳନୀରେ ଭୟାବହ ଅଗ୍ନିକାଣ୍ଡ ଘଟିଥିଲା । ଏଥିରେ ବହୁଲୋକ ମୃତାହତ ହୋଇଥିଲେ । ପରିସ୍ଥିତି ଅତ୍ୟନ୍ତ ଶୋକାକୁଳ ଥିଲା । ସେ ଦିନର ଦୃଶ୍ୟ ଯିଏ ଦେଖିଛି, ସେ କେବେ ଭୁଲି ପାରିବନି ସେ ଦୁଃଖଦ ଓ ମର୍ମନ୍ତୁଦ ଘଟଣାକୁ । ଏଇ କଥାଟି ସେଦିନ ଓଡ଼ିଶାରୁ ଦିଲ୍ଲୀ ପର୍ଯ୍ୟନ୍ତ ଛୁଟି ଯାଇଥିଲା । ସେତବେଳର ପ୍ରଧାନମନ୍ତ୍ରୀ ଦେବେଗୌଡ଼ା ଏହି ଘଟଣାରେ ଦୁଃଖପ୍ରକାଶ କରିବା ସହିତ ଘଟଣାସ୍ଥଳକୁ ଆସିଥା'ନ୍ତି । ତାଙ୍କ ସହ ଥା'ନ୍ତି ବିଜୁବାବୁ । ରାଜ୍ୟ ସରକାର ସେତେବେଳକୁ ସହାୟତା ଘୋଷଣା କରିସାରିଥା'ନ୍ତି । ଦେବେଗୌଡ଼ା ଘଟଣା ସଂପର୍କରେ ତନ୍ନତନ୍ନ ବୁଝି ମର୍ମାହତ ହେଲେ । ସାମ୍ବାଦିକମାନେ ପ୍ରଧାନମନ୍ତ୍ରୀଙ୍କୁ ପ୍ରଶ୍ନ କଲେ– ''ଏପରି ଏକ ସଂବେଦନଶୀଳ ବିପର୍ଯ୍ୟୟରେ କେନ୍ଦ୍ର କେତେ ସହାୟତା ଦେବ ?'' ପ୍ରଧାନମନ୍ତ୍ରୀ ଦେବେଗୌଡ଼ା କିଛି କହିବା ପୂର୍ବରୁ ବିଜୁ ପଟ୍ଟନାୟକ ତତ୍‌କ୍ଷଣାତ କହିଦେଲେ– ''ରାଜ୍ୟ ଯାହା ଦେବ, କେନ୍ଦ୍ର ତା'ର ଦୁଇଗୁଣ ଅର୍ଥ ଦେବ ।'' ପ୍ରଧାନମନ୍ତ୍ରୀ ବିଜୁଙ୍କ କଥାରେ ସମ୍ମତି ପ୍ରକାଶ କଲେ । ବିଜୁଙ୍କ କଥା ଅନୁସାରେ ଅର୍ଥ ଦିଆଯିବ ବୋଲି ସାମ୍ବାଦିକମାନଙ୍କୁ ଉତ୍ତର ଦେଲେ । କିନ୍ତୁ ପରେ ପ୍ରଧାନମନ୍ତ୍ରୀ ଏହି ଅର୍ଥରାଶି ଦେବାରେ ଅହେତୁକ ବିଳମ୍ବ କଲେ । ରାଜ୍ୟର ରାଜନୈତିକ ଦଳଗୁଡ଼ିକ ମଧ୍ୟ ଏହାକୁ ନେଇ ଚର୍ଚ୍ଚା ଆରମ୍ଭ କରିଦେଲେ ।

ବର୍ତ୍ତମାନର ବିଜେଡ଼ି ନେତା ଅତନୁ ସବ୍ୟସାଚୀ ନାୟକ ଦିଲ୍ଲୀ ଯାଇଥା'ନ୍ତି । ତାଙ୍କ ପରିବାର ସହ ବିଜୁବାବୁଙ୍କର ଘନିଷ୍ଠତା ଥାଏ ବହୁଦିନରୁ । ଅତନୁଙ୍କ ବାପା ପୂର୍ବତନ ବିଧାୟକ ରାଜକିଶୋର ନାୟକ ଥିଲେ ବିଜୁବାବୁଙ୍କର ସହଯୋଗୀ । ରାଜକିଶୋରଙ୍କ ସୁବିଧା ଅସୁବିଧାରେ ବିଜୁବାବୁ ତାଙ୍କ ପରିବାର ପାଖରେ ଠିଆ ହୋଇଛନ୍ତି । ସେହି ଦୃଷ୍ଟିରୁ ବିଜୁବାବୁ ଅତନୁଙ୍କୁ ଭଲଭାବରେ ଜାଣିଥା'ନ୍ତି । ଅତନୁ

ଦିଲ୍ଲୀରେ ବିଜୁବାବୁଙ୍କୁ ଭେଟି ବାରିପଦା ଅର୍ଥରାଶି ସହାୟତା କଥା ପଚାରିଲେ । କେନ୍ଦ୍ର କାହିଁକି ଏ ବାବଦ ଟଙ୍କା ଦେଉନି । ବିଜୁବାବୁ ତାଙ୍କୁ କହିଲେ– ''ମୋତେ କାହିଁକି କହୁଛୁ ? ଯାଉନୁ, ପ୍ରଧାନମନ୍ତ୍ରୀଙ୍କୁ ଭେଟି ନିଜେ କହ ।'' ଏମିତି ଚିନ୍ତା ଭିତରେ ଥିବାବେଳେ ବିଜୁବାବୁ ପୁଣି କହିଲେ– ''ଚୁପ୍ କାହିଁକି ରହିଲୁ ! ଟୋକାଟେ ହେଇଛୁ । ପ୍ରଧାନମନ୍ତ୍ରୀଙ୍କୁ ଭେଟିବାକୁ ଡରୁଛୁ । ହଉ, ତୁ ଯା', ମୁଁ ସେ ବ୍ୟବସ୍ଥା କରିବି ।'' ବିଜୁବାବୁଙ୍କ କଥାରେ ସେ ଭୁବନେଶ୍ୱର ଫେରିଆସିଲେ । ଏଠି ଆସି ଶୁଣିଲେ ଯେ, କେନ୍ଦ୍ର ସରକାର ଦେବାକୁ ଥିବା ଅର୍ଥରାଶି ପଠାଇ ଦେଇଛନ୍ତି ।



# ଗୁଆଘିଅରେ ଶାଗଭଜା

୧ ୯ ୭ ୧ ମସିହାର କଥା । ବିଜୁ ପଟ୍ଟନାୟକ ନିର୍ବାଚନ ପ୍ରଚାରରେ କେନ୍ଦ୍ରାପଡ଼ା ଯାଇଥିଲେ । ସେଠାରେ ରାଜନଗରର ମଙ୍ଗଳପୁର ଗାଁ । ଗାଁ ଝିଅ ଖୁଲଣା ଠିଆହୋଇ ବିଜୁବାବୁଙ୍କ ପ୍ରଚାର ଦେଖୁଥା'ନ୍ତି । ବିଜୁବାବୁ ଖୁଲଣାକୁ ଦେଖି କହିଲେ– ''ଆଜି ତୋ ଘରେ ଶାଗ ପଖାଳ ଖାଇବି । ତୁ ଅପେକ୍ଷା କରିବୁ । ମୁଁ ତୋ ଘରକୁ ଆସିବି ।'' ବିଜୁ ପଟ୍ଟନାୟକ, ଏତେ ବଡ଼ଲୋକ । ମୋ ଘରେ ଖାଇବାକୁ କହୁଛନ୍ତି । ଖୁଲଣା ତାଙ୍କୁ କ'ଣ ବାସି ପଖାଳ ଦେବ ! ନା, ସେ ଭାତରେ ପାଣି ପୁରାଇ ସଜ ପଖାଳ କଲା । ଚିନ୍ତା କଲା, ଗୁଆଘିଅ ପକାଇ ଶାଗ ଭାଜିବ । ଆମେ ତମେ ଭଳି ଲୋକ ହୋଇଥିଲେ ସିନା ତେଲରେ ଶାଗ ଭାଜିଥା'ନ୍ତା । ଗୁଆଘିଅରେ ଶାଗ ଭାଜିଥିବାରୁ ଖୁଲଣା ମନ କୁଣ୍ଢେମୋଟ । ସବୁ କାମ ସାରି ଖୁଲଣା ଅପେକ୍ଷା କଲା ବିଜୁବାବୁଙ୍କ ଫେରିବା ବାଟକୁ ।

ବିଜୁବାବୁ ପ୍ରଚାର ସାରି ଫେରୁଥିବାବେଳେ ଖୁଲଣା ଘରପାଖେ ଅଟକିଗଲେ । ଖୁଲଣା ସଜ ପଖାଳ ବାଢ଼ିଦେଲା । ହେଲେ, ବିଜୁବାବୁ ପଖାଳ ଖାଇଲେନି । କେବଳ ଖୁଲଣା ଭାଜିଥିବା ଶାଗ ଖାଇଲେ । ହେଲେ ଶାଗ ଖାଇବା ବେଳେ ବିଜୁବାବୁ ଖୁଲଣାକୁ କହିଲେ– ''ତୁ କ'ଣ ଘରେ ଘିଅରେ ଶାଗ ଭାଜି ଖାଉ ?'' ଖୁଲଣା ମୁଣ୍ଡ ଟୁଙ୍ଗାରି ମନା କଲା । ବିଜୁବାବୁ ପୁଣି କହିଲେ– ''ତା'ହେଲେ ତୁ ମୋ ପାଇଁ ଘିଅରେ ଶାଗ ଭାଜିଲୁ କାହିଁକି ?'' ସେ ଚୁପ୍ ରହିଲା । ଏତେବଡ଼ ଲୋକଙ୍କୁ କି ଉତ୍ତର ଦେବ । ଖୁଲଣା ଘରୁ ଶାଗଭଜା ଖାଇ ସେଦିନ ମନତୃପ୍ତିରେ ବିଜୁବାବୁ ପୁଣି ନିର୍ବାଚନ ପ୍ରଚାରରେ ଦୂର ଗାଁକୁ ଚାଲିଗଲେ । ହେଲେ ଖୁଲଣା ମନରେ ଅବଶୋଷ ରଖି ଦେଇଗଲେ । ହୁଏତ ସୋରିଷ ତେଲରେ ଶାଗ ଭାଜିଥିଲେ, ସେଦିନ ବିଜୁବାବୁ ତା' ଉପରେ ଅଧିକ ଖୁସି ହୋଇଥା'ନ୍ତେ । ବିଜୁବାବୁଙ୍କ କଥାପଡ଼ିଲେ, ସେ ଏହା ଗୁଣୁଗୁଣାନ୍ତି । ଆଖିରେ ଆପେଆପେ ଲୁହ ଢଳେଇ ଆସେ ।

ବିଜୁ ପଟ୍ଟନାୟକ କେବେ ନିଜର ବଡ଼ପଣିଆ ଜାହିର କରିନାହାନ୍ତି । ସାଧାରଣ ଲୋକଙ୍କ ସହ ମିଶିଯା'ନ୍ତି । ସେମାନଙ୍କର ଚଳଣୀ ସହ ଜଡ଼େଇ ହୋଇଯା'ନ୍ତି । ଅନ୍ୟଠୁ ନିଜକୁ ଅଲଗା ମନେ କରନ୍ତିନି । ଏହାଦ୍ୱାରା ସଂପର୍କରେ ଦୂରତା ଆସେ । ତେଣୁ ସେ ସର୍ବଦା ବାସ୍ତବତା ଭିତରେ ହିଁ ରହନ୍ତି । ତେବେ ସେଦିନର ଏହି ଘଟଣାରେ ମୁହଁ ଉପରେ ଖୁଲଣାକୁ ବିରକ୍ତ ହୋଇଥିଲେ ମଧ୍ୟ ବିଜୁବାବୁ ପରୋକ୍ଷଭାବେ ସୂଚେଇ ଦେଇଥିଲେ ଯେ, ଲୋକଙ୍କଠାରୁ ଲୋକପ୍ରତିନିଧିଙ୍କ ମଧ୍ୟରେ ଦୂରତା ହିଁ ସବୁ ବିକାଶ କ୍ଷେତ୍ରରେ ପ୍ରତିବନ୍ଧକ ।



# ସରସ୍ୱତୀଙ୍କୁ ଦେଲେ କାଇନେଟିକ୍ ହୋଣ୍ଡା ସ୍କୁଟର

ବେଳେବେଳେ ବାପାଙ୍କ ସହ ନବୀନ ନିବାସ ଯାଉଥିଲେ ସରସ୍ୱତୀ । ବାପା ଚୈତନ୍ୟପ୍ରସାଦ ମାଝି ପୂର୍ବତନ ମନ୍ତ୍ରୀ ତଥା ବିଜୁବାବୁଙ୍କର ଜଣେ ଘନିଷ୍ଠ ସହଯୋଗୀ । ତାଙ୍କ ବଡ଼ଝିଅ ସରସ୍ୱତୀ ହେମ୍ବ୍ରମ୍ ଓ ସାନଝିଅ ଲିପି ହେମ୍ବ୍ରମ୍ଙ୍କୁ ଖୁବ୍ ଭଲ ପାଉଥିଲେ ବିଜୁବାବୁ । ବାପାଙ୍କ ସହ ବିଜୁବାବୁଙ୍କୁ ଭେଟିବା ବେଳେ, ସରସ୍ୱତୀଙ୍କୁ ସେ ପାଖରେ ବସାଇ ଗୀତ ବୋଲିବାକୁ କହୁଥିଲେ । ସରସ୍ୱତୀଙ୍କ କଣ୍ଠ ଭଲଥିବାରୁ ବିଜୁବାବୁ ତାଙ୍କୁ ଖୁବ୍ ତାରିଫ କରୁଥିଲେ । ସରସ୍ୱତୀଙ୍କ ସାନ ଭଉଣୀ ଲିପି ହେମ୍ବ୍ରମ୍ଙ୍କୁ ସେ ଧରମ ଝିଅ କରି ବାହାଘର ବି କରିଥିଲେ । ସେତେବେଳେ ମୟୂରଭଞ୍ଜ ଜିଲ୍ଲାରେ ଆଦିବାସୀ ସଂପ୍ରଦାୟର ଲୋକେ ଅନ୍ୟ ସଂପ୍ରଦାୟରେ ବିବାହ କରୁନଥିଲେ । କେହି ଏପରି କଲେ ଆଦିବାସୀ ସଂପ୍ରଦାୟରୁ ବାସନ୍ଦ କରାଯାଉଥିଲା । କିନ୍ତୁ ବିଜୁବାବୁ କହିଲେ– ‘‘କାହିଁକି ହୋଇପାରିବନି । ଜାତି, ସଂପ୍ରଦାୟ କ’ଣ ?’’ ପରମ୍ପରାରୁ ହଟି ସେ ଲିପିଙ୍କୁ ସାଧାରଣବର୍ଗ ଜାତିରେ ବିବାହ କରାଇଥିଲେ । ତେଣୁ ଚୈତନ୍ୟଙ୍କ ପରିବାରର ସବୁ ହାନିଲାଭରେ ବିଜୁବାବୁ ଠିଆ ହେଉଥିଲେ । ସରସ୍ୱତୀ ନବୀନ ନିବାସକୁ ଆସୁଥିବାବେଳେ ଖୁସିରେ ବିଜୁବାବୁ ତାଙ୍କୁ ଗୋଟିଏ କାଇନେଟିକ୍ ହୋଣ୍ଡା ସ୍କୁଟରଟିଏ କିଣି ଦେଇଥିଲେ । ପୁରୁଣା ହେଲେ ବି ସରସ୍ୱତୀ ତାହାକୁ ସାଇତି ରଖିଥିଲେ । ଏହା ତାଙ୍କ ପାଇଁ ଅମୂଲ୍ୟ । ବିଜୁ ପଟ୍ଟନାୟକଙ୍କ ଅବର୍ତ୍ତମାନରେ ଏହି ସ୍କୁଟରଟିରେ ବସି ଟିକେ ବୁଲି ଆସିଲେ ତାଙ୍କ ସ୍ନେହ ଶ୍ରଦ୍ଧା ସବୁ ମନେପଡ଼ିଯାଏ । ବିଜୁବାବୁଙ୍କ ସେଦିନର ସେଇ ଉପହାର ସରସ୍ୱତୀଙ୍କ ଜୀବନର ସବୁଠୁ ମହାନ, ସବୁଠୁ ଦାମୀ ।

ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବାବେଳେ ସରସ୍ୱତୀଙ୍କ ବାପା ଚୈତନ୍ୟପ୍ରସାଦ ମାଝି ଶିକ୍ଷାମନ୍ତ୍ରୀ ଥିଲେ । ସେହି ସମୟରେ ସରସ୍ୱତୀ ବହୁବାର ବିଜୁବାବୁଙ୍କ ନିକଟକୁ ଯାଉଥିଲେ । ଅବଶ୍ୟ ସମୟକ୍ରମେ ସେ ବାରିଙ୍ଗପୋଷିର ବିଧାୟିକା ହୋଇଥିଲେ । ସବୁ ମୂଳରେ ବିଜୁବାବୁଙ୍କ ପ୍ରେରଣା ।



# ମାଲିକର ମାଲିକ

ବିଜୁବାବୁଙ୍କର ଘରେ ବହୁଲୋକ କାମ କରିଛନ୍ତି । ବିଜୁବାବୁଙ୍କ ସହ ସେମାନଙ୍କର ଅନୁଭବ ମଧ୍ୟ ଅନେକ ସ୍ଥଳେ ଖୁବ୍ ଚମତ୍କାର । ତାଙ୍କ ଭିତରେ ଛୋଟବଡ଼ର କିଛି ଫରକ ନାହିଁ । କେତେବେଳେ ରିକ୍ସାବାଲା ସହ ଗପସପ ହୋଇ ତା' କଥା ଶୁଣନ୍ତି ତ, ଆଉ କେତେବେଳେ ରୋଷେୟା ଓ ପୋଷାକପତ୍ର ଇସ୍ତ୍ରୀ କରୁଥିବା ଲୋକ ସହ ସଂପର୍କ ଯୋଡ଼ି ଦେଇଥା'ନ୍ତି । ଏକଦା ବିଜୁବାବୁଙ୍କ ଘରେ କାମ କରୁଥିବା ଜଣେ ଲୋକ ତାଙ୍କ ଭୋଜିକୁ ବିଜୁବାବୁଙ୍କୁ ନିମନ୍ତ୍ରଣ କଲେ । ଏମିତିବି ହୋଇଥିବ, ବିଜୁବାବୁଙ୍କଠାରୁ ସାମୟିକ ଛୁଟି ପାଇବା ପାଇଁ ହେଉ କିମ୍ବା ସୌଜନ୍ୟମୂଳକ ଭାବେ ସେ ବିଜୁବାବୁଙ୍କୁ ଏକଥା ଜଣାଇଛନ୍ତି । ବିଜୁବାବୁ ସେତେବେଳକୁ ଥରେ ମୁଖ୍ୟମନ୍ତ୍ରୀ ହୋଇସାରିଥା'ନ୍ତି । କେନ୍ଦ୍ରରେ ମନ୍ତ୍ରୀ ଥା'ନ୍ତି । ଏତେ ବଡ଼ ପ୍ରତିପତ୍ତିଶାଳୀ ରାଜନେତା ଯେ ତାଙ୍କ ଘରକୁ ଯିବେ, ଏକଥା ବିଶ୍ୱାସ ରଖିନଥିଲେ ସେହି ଭୃତ୍ୟ ଜଣକ । ସେ ତ ଗରିବ ଲୋକ । ବିଜୁବାବୁ ବା ଆସିଲେ ବସିବେ କେଉଁଠି ? ସେ ବା ଆସିବେ କାହିଁକି ? ଏଇ ଧାରଣା ଥିଲା ତାଙ୍କର । କିନ୍ତୁ ବିଜୁବାବୁ ଏକଥା ମନେ ରଖିଥା'ନ୍ତି । ବର୍ଷବର୍ଷଧରି ମୋ କଥା ବୁଝୁଛି ଲୋକଟି । ଯେମିତି ହେଲେ ଯାଇ ବୁଲି ଆସିବେ ।

ହଠାତ୍ ଉତ୍ସବ ଦିନ ଦେଖାଗଲା ବିଜୁବାବୁ ଯାଇ ସେହି ଲୋକଟିର ଗାଁରେ ହାଜର । କେନ୍ଦ୍ରମନ୍ତ୍ରୀ ଆସିଛନ୍ତି । ଗାଁ ଲୋକେ ଖୁସିରେ ନାଚିଗଲେ । ବିଜୁବାବୁଙ୍କୁ ଦେଖିବା ପାଇଁ ଛୁଟିଲେ । ସେଠାରେ ବିଜୁ ମାଲିକ ନ ଥିଲେ, ସେ ହୋଇଯାଇଥିଲେ ବନ୍ଧୁ । ତାଙ୍କୁ ସତ୍କାର ପାଇଁ ସମସ୍ତେ ବ୍ୟସ୍ତ ହୋଇଉଠିଲେ । ବିଜୁବାବୁ ସେଠିକା ଲୋକଙ୍କ ତତ୍ପରତା ଦେଖୁଥା'ନ୍ତି । କେଉଁଠି ବସିବେ ? କ'ଣ ଖାଇବେ ? ଏହା ଦେଖି ବିଜୁବାବୁ କହିଲେ– ''ମୋ ପାଇଁ ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? ବର୍ଷବର୍ଷଧରି ଯିଏ ମୋ କଥା ବୁଝୁଛି ସେ କ'ଣ ଏତିକି ଟିକିଏ କଥା ବୁଝିପାରିବନି ?'' ଏ ଗରିବ ଦ୍ୱାରକୁ ବିଜୁବାବୁଙ୍କ ପାଦ ପଡ଼ିଲା ବୋଲି, ଲୋକେ ଧନ୍ୟଧନ୍ୟ କଲେ । ବିଜୁବାବୁ

ସବୁ ଶୁଣୁଥା'ନ୍ତି, ଶେଷରେ ଗୋଟିଏ ପଦ କହିଲେ– ''ମୁଁ ମାଲିକ ହେଲେ କ'ଣ ହେଲା ? ସେ ତ ମୋର ଖାଇବା-ପିଇବାଠାରୁ ଆରମ୍ଭ କରି ଶୋଇବା, ଔଷଧ ଦେବା ସବୁକଥା ବୁଝୁଥିଲା । ସେ ତ ମୋର ଅସଲ ମାଲିକ । ମୋ ମାଲିକ ଘରକୁ ମୁଁ ଆସିନଥା'ନ୍ତି କେମିତି ?'' ଜମା ହୋଇଥିବା ଲୋକଙ୍କ ଆଖିରେ ସ୍ୱତଃ ଲୁହ ଜକେଇ ଆସିଲା । ବିଜୁବାବୁ ସେଦିନ ଖିଆପିଆ କରି ଖୁବ୍ ଖୁସିରେ ଫେରିଗଲେ । ହେଲେ ସ୍ମୃତିଟିଏ ଯୋଡ଼ି ଦେଇଗଲେ ସେଇ ଗରିବ ପରିବାରଟି ସହ ।



# ଭୁବନ, ଆ' ଏକାଠି 'ଚ' ପିଇବା

ଚୌଦ୍ୱାର ଲୁଗାକଳରେ ଶ୍ରମିକ ଆନ୍ଦୋଳନ ଚାଲିଥାଏ । ଶ୍ରମିକମାନେ ସେମାନଙ୍କର ବିଭିନ୍ନ ଦାବୀନେଇ ଅଡ଼ି ବସିଥା'ନ୍ତି । ବିଜୁବାବୁ ଚୌଦ୍ୱାର ଆସିଲେ । ଦେଖିଲେ ଭୁବନାନନ୍ଦ ଠିଆ ହୋଇଛନ୍ତି । ଭୁବନାନନ୍ଦ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଉଥା'ନ୍ତି । ସେ ବିଜୁବାବୁଙ୍କର ପଢ଼ାବେଳର ସାଙ୍ଗ । ବହୁ ଦିନପରେ ଭେଟଭାଟ । ପୁରୁଣା ସାଙ୍ଗକୁ ପାଇ ବିଜୁବାବୁ ଖୁସି । ହେଲେ ଭୁବନାନନ୍ଦ ଶ୍ରମିକମାନଙ୍କ ସମସ୍ୟାନେଇ ଚିନ୍ତିତ । ବିଜୁବାବୁ ଏତେଦିନର ସାଙ୍ଗକୁ ପାଖରେ ପାଇ ଛାଡ଼ନ୍ତେ କେମିତି ? ଡାକିଲେ– "ଆରେ ଭୁବନ, ଆ' ଚ ପିଇବା । ଏକାଠି ବସି କଥା ହେବା ।" ହେଲେ ଶ୍ରମିକଙ୍କ ନେତୃତ୍ୱ ନେଉଥିବା ଭୁବନାନନ୍ଦ ବିଜୁବାବୁଙ୍କର ଏକଥାକୁ ସହଜରେ ଗ୍ରହଣ କରିପାରୁନଥା'ନ୍ତି । ଗୋଟିଏ ପଟେ ବିଜୁବାବୁ ତୁଙ୍ଗନେତା ଆଉ ଶିଳ୍ପପତି । ଭୁବନାନନ୍ଦ ଗରିବ ଆଉ ଶ୍ରମିକ ଶ୍ରେଣୀର ପ୍ରତିନିଧି । ତାଙ୍କୁ ଅଡୁଆ ଅଡୁଆ ଲାଗୁଥାଏ ।

ବିଜୁବାବୁ ମୁହଁର ଭାଷା ସହଜରେ ବୁଝିପାରନ୍ତି । ସେ ଭୁବନାନନ୍ଦଙ୍କୁ ଆଉ ଥରେ ଡାକି କହିଲେ– "ମୁଁ କୋଟିପତି ହୁଏ, ତୁ ଶ୍ରମିକ ନେତା ହୁଅ, ସେଥିରେ ଯାଏ ଆସେ କେତେ । ପ୍ରଥମେ ତ ଆମେ ସାଙ୍ଗ ନା ! ଏକଥା କାହିଁକି ଭୁଲିଯାଉଛୁ ।" ଏକଥା କହି ବିଜୁବାବୁ ତାଙ୍କୁ ଡାକିନେଲେ । ଆ, ବସିବା, ଗପସପ ହବା । ଶେଷରେ ବିଜୁଙ୍କ କଥା ରଖିଲେ ଭୁବନାନନ୍ଦ । କର୍ମଚାରୀ, ଶ୍ରମିକନେତାଙ୍କ ସହ ବସି ବେଶ୍ କିଛି ସମୟ କଥାବାର୍ତ୍ତା ହେଲେ । ଇଏ ଥିଲା ତାଙ୍କ ବନ୍ଧୁପଣିଆର ଦୃଷ୍ଟାନ୍ତ । ଅନ୍ୟର ମନକୁ କିଣି ନେବାରେ ସେ ବେଶ୍ କାଇଦା ଜାଣିଥିଲେ ।

ଅନ୍ୟ ଏକ ଘଟଣାରେ, ବିଜୁବାବୁଙ୍କର ପିଲାଦିନର ଜଣେ ସାଙ୍ଗଙ୍କର ହଠାତ୍ ମୃତ୍ୟୁ ଘଟିଲା । ତାଙ୍କର ବିଧବାପତ୍ନୀ ବିଜୁବାବୁଙ୍କ ଦ୍ୱାରସ୍ଥ ହେଲେ । ନିଜର ଦୁଃଖ ଜଣାଇଲେ । ପିଲାମାନଙ୍କୁ ନେଇ କେମିତି ଚଳିବେ ପ୍ରକାଶକଲେ । ବନ୍ଧୁଙ୍କୁ ହରାଇ ବିଜୁବାବୁ ଖୁବ୍ ଦୁଃଖ କଲେ । ତା'ଙ୍କ ପିଲାଙ୍କର ଏପରି ଅବସ୍ଥା ଦେଖି ମର୍ମାହତ ବି

ହେଲେ । ବନ୍ଧୁପତ୍ନୀଙ୍କୁ ଆଶ୍ୱସନା ଦେଇ କହିଲେ– ''ଯାଅ, ତୁମ ପିଲାଙ୍କ କଥା ମୋତେ ଲାଗିଲା । ପଢ଼ାପଢ଼ିଠୁ ଆରମ୍ଭ କରି, ଘର ଖର୍ଚ୍ଚ ସବୁ ମୁଁ ଦେବି ।'' ବିଜୁବାବୁଙ୍କଠାରୁ କଥା ଶୁଣି ବନ୍ଧୁପତ୍ନୀ ଖୁସି ହୋଇ ଫେରିଲେ । ଆଉ ସ୍ୱାମୀଙ୍କଠାରୁ ଶୁଣିଥିବା ବିଜୁଙ୍କ ସାହସିକତା ଓ ଦରଦ ମନୋଭାବକୁ ସେ ସେଦିନ ପରଖିଥିଲେ ଖୁବ୍ ନିକଟରୁ ।



# ଚନ୍ଦୁଲାଲଙ୍କ ଉପରେ ରାଗ ଶୁଝାଇଲେ

ବିଜୁ ପଟ୍ଟନାୟକ ପାଇଲଟ୍ ଥାଇ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ କରୁଥିବାରୁ ୧୯୪୩ ଜାନୁଆରୀ ୧୩ ତାରିଖରେ ତାଙ୍କୁ ଜେଲ୍‌କୁ ନିଆଗଲା । ହାତରେ ହ୍ୟାଣ୍ଡକପ୍, ଆଉ ଗୋଡ଼ରେ ବେଡ଼ି ପଡ଼ିଲା । ଦିଲ୍ଲୀ ରାଜରାସ୍ତାରେ ପୋଲିସମାନେ ତାଙ୍କୁ ଧମକଚମକ ଦେଇ ଠେଲାପେଲା କରି ନେଉଥା'ନ୍ତି । ଖରାରେ ଦେହ ଯେତିକି ଗରମ ହେଉଥାଏ, ସେତିକି ରକ୍ତ ବି ଗରମ ହୋଇଯାଉଥାଏ ବିଜୁବାବୁଙ୍କର । ଗମଗମ ହୋଇ ଝାଳ ବୋହିଯାଉଥାଏ । ଏତେବଡ଼ ଡେଙ୍ଗା ଟୋକାଟାଏ । ଆକାଶରେ ଉଡ଼ାଜାହାଜରେ ଉଡ଼ିବା ପିଲା । ଏଠି ଝାଳନାଳ ହୋଇ ରାସ୍ତାରେ ଚାଲିଛି । ବିଜୁଙ୍କୁ ଖୁବ୍ ଶୋଷ ହେଲା । କହିଲେ– "ଟୋପାଏ ପାଣି ଦିଅ ।" ଏହି ସମୟରେ ଚନ୍ଦୁଲାଲ ତ୍ରିବେଦୀ ଗୋରା ସରକାରଙ୍କ ଗୋଲାମୀ । ସେ ଆଇ.ସି.ଏସ୍. ଅଫିସର ଓ ବ୍ରିଟିଶରଙ୍କର ବିଶ୍ୱସ୍ତ । ବିଜୁଙ୍କ କଥାରେ ହଠାତ୍ ଚିହିଁକି ଉଠି କହିଲେ– "ଶଳା ! ପାଣି ମାଗୁଛୁ ପିଇବୁ ! ପାଣି ନାହିଁ । ପରିସ୍ରା କରି ପି ।" ବିଜୁ ରାଗରେ ପାଚି ଲାଲ ପଡ଼ିଗଲେ । ହାତରେ ବେଡ଼ି ପଡ଼ିନଥିଲେ ସେଦିନ ସେ ଚନ୍ଦୁଲାଲଙ୍କର ରକ୍ତ ପିଇଥା'ନ୍ତେ ।

ଶେଷରେ ପ୍ରବଳ ଖରାରେ ତୃଷାର୍ତ୍ତ ବିଜୁ ଲାଲକିଲ୍ଲାରେ ପହଞ୍ଚିଲେ । ତାଙ୍କୁ ଜେଲ୍‌ରେ ଭର୍ତ୍ତି କରିଦିଆଗଲା । ସେତେବେଳେ ସେହି ଜେଲ୍‌ରେ ଜବାହାରଲାଲ ନେହେରୁ, ଭୁଲାଭାଇ ଦେଶାଇ ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର କିଛି ସେନାନାୟକ କାରାବରଣ କରିଥା'ନ୍ତି । ଏତେ ବଡ଼ବଡ଼ ସଂଗ୍ରାମୀଙ୍କ ସାନ୍ନିଧ୍ୟରେ ଆସି ବିଜୁଙ୍କର ସବୁ କ୍ରୋଧ ପ୍ରଶମିତ ହୋଇଗଲା । ସେ ଦେଶପାଇଁ କାରାବରଣ କରିଥିବାରୁ ନିଜକୁ ଧନ୍ୟ ମନେକଲେ । ବିଜୁଙ୍କ ଜେଲ୍‌ଯିବା ଖବର ବାପାଙ୍କ ପାଖରେ ପହଞ୍ଚିଲା । ଯେଉଁ ପୁଅକୁ ସେ ବ୍ରିଟିଶ୍ ବିରୋଧରେ ସାହସିକତା ଓ ବୀରତ୍ୱର କଥା ଶିଖାଇଛନ୍ତି, ସେ କାହିଁକି ବା ପୁଅର ଜେଲ୍ ଯିବାରେ ଦୁଃଖ ପ୍ରକାଶ କରିବେ । ସାରା

ପରିବାର ଖୁସି ହୋଇଗଲେ । ତଥାପି ପୁତ୍ରସ୍ନେହୀ ଲକ୍ଷ୍ମୀନାରାୟଣ ବାବୁ ଏକଥା ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଜଣାଇଲେ । ବଡ଼ଲାଟ ଓ ୱାଭେଲ ସାହେବଙ୍କ ସହ ଗଜପତିଙ୍କର ଭଲ ସଂପର୍କ ଥିଲା । ଲକ୍ଷ୍ମୀନାରାୟଣଙ୍କ ଅନୁରୋଧରେ ପାରଳା ରାଜା ଦିଲ୍ଲୀଯାଇ ବିଜୁଙ୍କ ମୁକ୍ତିପାଇଁ ଅନୁରୋଧ କଲେ । ୱାଭେଲ ସାହେବ ହସିହସି କହିଲେ– ''ବିଜୁ ଜଣେ ସୁଦକ୍ଷ ଆଉ ଦୁଃସାହସୀ ପାଇଲଟ୍ । ସେ ବି ମୋତେ ଏକ ବଡ଼ ଦୁର୍ଘଟଣାରୁ ରକ୍ଷା କରିଥିଲେ । ହେଲେ ବର୍ତ୍ତମାନ ପରିସ୍ଥିତି ଭିନ୍ନ । ସେ ଜେଲ୍‌ରୁ ଖସିଲେ କୁଆଡ଼େ ଉଡ଼ି ପଳାଇବ, ଧରି ହବନି ।'' ପାରଳା ରାଜା ନିରାଶରେ ଫେରିଲେ । ହେଲେ ବିଜୁବାବୁଙ୍କର ଏସବୁ ପ୍ରତି ସେତେଟା ଅନୁଶୋଚନା ନ ଥାଏ । ମାତ୍ର ଚନ୍ଦୁଲାଲଙ୍କ କଥା ପୂରା ମନେ ଥାଏ । ଲାଲକିଲ୍ଲାରେ କିଛିଦିନ ରହିବାପରେ ତାଙ୍କୁ ଫିରୋଜପୁର ଓ ପରେ କଟକକୁ ପଠାଇ ଦିଆଗଲା ।

୧୯୪୫ରେ କାରାମୁକ୍ତ ହେଲେ ବିଜୁବାବୁ । ହେଲେ ସର୍ତ୍ତ ଥିଲା ସେ କଟକରୁ ତିରିଶ ମାଇଲ ଦୂରକୁ ଯାଇପାରିବେ ନାହିଁ । ବିଜୁ କ'ଣ ଘରେ ବସିବା ଲୋକ ? ଦେଶ ସ୍ୱାଧୀନ ହେଲା । ବିଜୁ ଶିଳ୍ପ ଯୋଜନା କଲେ । ଚୌଦ୍ୱାରରେ ଓଡ଼ିଶା ଟେକ୍ସଟାଇଲ ମିଲସ୍ ପ୍ରତିଷ୍ଠା ନିଷ୍ପତ୍ତି ନେଲେ । ଟାଙ୍ଗରା ଭୂଇଁରେ ଗଢ଼ିଉଠିଲା ଶିଳ୍ପର ସାମ୍ରାଜ୍ୟ । ହେଲେ ଏତେ ବଡ଼ କାରଖାନା କିଏ ଉଦ୍‌ଘାଟନ କରିବ ? ହରେକୃଷ୍ଣ ମହତାବ କହିଲେ, ରାଜ୍ୟପାଳ ଚନ୍ଦୁଲାଲ ଦ୍ୱିବେଦୀଙ୍କ ନାଁ । ବିଜୁବାବୁ ଚନ୍ଦୁଲାଲଙ୍କ ନାଁ ଶୁଣି ରାଗରେ ତାତି ଉଠିଲେ । ଘୃଣାରେ କହିଲେ– ''ସେଇ ଚନ୍ଦୁଲାଲ ! ଯିଏ ଦିନେ ବ୍ରିଟିଶରଙ୍କ ପାଦ ଚାଟୁଥିଲା । ସଂଗ୍ରାମୀଙ୍କ ଉପରେ ଅତ୍ୟାଚାର କରୁଥିଲା । ସିଏ ତ ଦେଶଦ୍ରୋହୀ । ଅନ୍ତତଃ ମୋ ତିଆରି କାରଖାନାକୁ ସେ ଉଦ୍‌ଘାଟନ କରିପାରିବେନି । ମୋ ରାଜ୍ୟର ରାସ୍ତାରେ ବୁଲୁଥିବା ଶ୍ରମିକଟିଏ ଡାକିଆଣି ଉଦ୍‌ଘାଟନ କରିବି ପଛେ ତାଙ୍କୁ ଡାକିବାର ପ୍ରଶ୍ନ ଉଠୁନି । ସେ ବେଇମାନ୍, ଅମଣିଷ ।'' ଶେଷରେ ସେଇଆ ହେଲା । ବିଜୁବାବୁ ରାଜ୍ୟପାଳ ଚନ୍ଦୁଲାଲଙ୍କୁ କାରଖାନା ଉଦ୍‌ଘାଟନ ପାଇଁ ଡାକି ନ ଥିଲେ ।

ଏଥିରୁ ଅନୁମିତ ହୁଏ ବିଜୁବାବୁଙ୍କ ନିଗୁଢ଼ ଦେଶପ୍ରେମ ।



# ବିଜୟାନନ୍ଦରୁ ବିଜୁ

ବିଜୁବାବୁଙ୍କର ପିତୃଦତ୍ତ ନାଁ ବିଜୟାନନ୍ଦ । ହେଲେ ଓଡ଼ିଆବାସୀଙ୍କ ଦ୍ୱାରା ସେ 'ବିଜୁ' ନାମରେ ଉଚ୍ଚାରିତ । ଏକଦା ସେ ଭୋଟ ପ୍ରଚାରରେ ଯାଇଥା'ନ୍ତି । ଫେରିବାବେଳେ ସାଲେପୁରଠାରେ ଟିକେ ଅଟକିଲେ । ଡ୍ରାଇଭରକୁ କହିଲେ– ''ଗାଡ଼ି ରଖ, ପରିସ୍ରା ଲାଗିଲାଣି ।'' ଏହାପରେ ବିଜୁବାବୁ ରାସ୍ତାକଡ଼ ଏକ ଅନ୍ଧାରିଆ ସ୍ଥାନକୁ ଚାଲିଗଲେ । ରାସ୍ତା ଉପରେ କିଛି ଲୋକ ଗପିଗପି ଚାଲିଥା'ନ୍ତି । ଭୋଟ ପ୍ରଚାର କରିବାକୁ ବିଜୁ ଆସିଛି । ଏଇ ବାଟଦେଇ ଫେରିବ । ବିଜୁ ଭାବିଲେ– ମୁଁ ଲୋକଙ୍କର କେତେ ନିକଟତର ହୋଇଯାଇଛି । ସେମାନେ ମୋତେ ଘର ମଣିଷ ପରି ତୁ, ତା' କରୁଛନ୍ତି । ଆଉ ମୋ ନାଁ ଦେଇସାରିଲେଣି 'ବିଜୁ' । ଇଏ ତ ଖୁବ୍ ଚମତ୍କାର । ବିଜୁବାବୁ ଗାଡ଼ି ନିକଟକୁ ଫେରିବାପରେ ଅନେକ ଲୋକ ତାଙ୍କୁ ବେଢ଼ିଗଲେ । କିଛିସମୟ ଚାହିଁଲେ । ଡ୍ରାଇଭରକୁ ପଚାରିଲେ– ''ଇଏ କ'ଣ ସେଇ ବିଜୁ ।'' ଡ୍ରାଇଭର ମୁଣ୍ଡଟୁଙ୍ଗାରି ହଁ' କହିଲା । ଏଥର ଲୋକଙ୍କର ଖୁସି କାହିଁରେ କ'ଣ । ପାଖ ବଜାରୁ ଶହଶହ ଲୋକ ବିଜୁ ଆସିଛି ଶୁଣି ଧାଇଁ ଆସିଲେ । ଜିନ୍ଦାବାଦ ପକାଇ ସ୍ଲୋଗାନ୍ ଦେଲେ । କି ଆତ୍ମୀୟତା ! ସତେ ଯେମିତି ନିଜର ଲୋକଟିକୁ ହଠାତ୍ ସେମାନେ ପାଖରେ ପାଇଯାଇଛନ୍ତି । ସେଥିପାଇଁ ଖୁସିରେ ଅଧୀର ହୋଇପଡୁଛନ୍ତି । ଏଇ କଥାକୁ ବିଜୁ ପଟ୍ଟନାୟକ ଦୀର୍ଘ ବର୍ଷ ବର୍ଷ ଧରି ଭୁଲିପାରି ନ ଥିଲେ । ସେଇ ଦିନଠୁ ସେ ବିଜୟାନନ୍ଦରୁ ବିଜୁ ପାଲଟିଗଲେ । ଏଇ ନାଁ'ଟିକୁ ଶ୍ରଦ୍ଧାରେ ଗ୍ରହଣ କରିନେଲେ । କ୍ରମେ ସାଧାରଣଲୋକେ ବି ତାଙ୍କୁ ବିଜୁ ପଟ୍ଟନାୟକ ଡାକିଲେ । ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଏଇ ନାଁରେ ତାଙ୍କର ସ୍ୱତନ୍ତ୍ର ପରିଚୟ ସୃଷ୍ଟିହେଲା । ଏହି ଘଟଣାଟି କଥା ପ୍ରସଙ୍ଗରେ ବିଜୁବାବୁ ବରିଷ୍ଠ ସାମ୍ବାଦିକ ଜୀମୁତ ମଙ୍ଗରାଜଙ୍କୁ ଏକ ସାକ୍ଷାତକାର ଦେଇ କହିଥିଲେ । ସାଲେପୁର ଲୋକଙ୍କ ତୁଣ୍ଡରେ 'ବିଜୁ' ଶବ୍ଦଟି ଏମିତି ଏକ ଅମୂଲ୍ୟ ସ୍ୱୀକୃତି ଥିଲା, ଯାହା ତାଙ୍କ ଜୀବନ ସହ ଯୋଡ଼ି ହୋଇ ରହିଥିଲା ମୃତ୍ୟୁ ପର୍ଯ୍ୟନ୍ତ ।



# ଜୟପ୍ରକାଶଙ୍କ ଡ୍ରାଇଭର

ମହାନ୍ ସମାଜବାଦୀ ନେତା ଜୟପ୍ରକାଶ ନାରାୟଣ ଓଡ଼ିଶା ଆସିଥିଲେ । କେନ୍ଦ୍ରରୁ କଂଗ୍ରେସ ସରକାରଙ୍କୁ ହଟାଇବା ନେଇ ସେ ସାରା ଭାରତ ବୁଲି ନିର୍ବାଚନ ପ୍ରଚାର କରୁଥା'ନ୍ତି । ଆଉ ଏକ ଭାରତ ଯୁଦ୍ଧର ସେ ଅର୍ଜୁନ ସାଜିଥା'ନ୍ତି । ଏହା ଥିଲା ସବୁଠୁ ବଡ଼ ପରିବର୍ତ୍ତନର ସମୟ । ଯାହାର କର୍ଣ୍ଣଧାର ଥିଲେ ଜୟପ୍ରକାଶ ନାରାୟଣ । ସେ ଓଡ଼ିଶା ଆସିଥିବା ବେଳେ ଏଠାରେ ରାସ୍ତାରେ ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଥିଲା । ଜୟପ୍ରକାଶ ନାରାୟଣ ଯାଉଥିବା ଗାଡ଼ିରେ ବିଜୁବାବୁ ଡ୍ରାଇଭିଂ କରୁଥିଲେ । ଜୟପ୍ରକାଶ ନାରାୟଣଙ୍କ ଭଳି ରାଷ୍ଟ୍ରନେତାଙ୍କ ଗାଡ଼ି ଚଳାଇବାକୁ କ'ଣ ଡ୍ରାଇଭର ନ ଥିଲେ ଯେ, ବିଜୁବାବୁ ଏହା ତୁଲାଇଥିଲେ ? ଅନେକଙ୍କ ମଧ୍ୟରେ ଏହି ପ୍ରଶ୍ନ ଉଠିଥିଲା । କିନ୍ତୁ ତାଙ୍କର ଉତ୍ତର ଥିଲା ଖୁବ୍ ସ୍ପଷ୍ଟ ।

– ''ଗାଡ଼ି ଚଳାଇବା ମୋର ଏକ ସଉକ୍ । ତା'ଛଡ଼ା ମୁଁ ଜଣେ ଦକ୍ଷ ପାଇଲଟ ଥିଲି । ଏକଥା ସମସ୍ତେ ଜାଣନ୍ତି । ପୁଣି ବିଜୁ ପଟ୍ଟନାୟକ ଥାଉଥାଉ ଜୟପ୍ରକାଶଙ୍କ ଗାଡ଼ି ଆଉ ଜଣେ କିଏ ସାଧାରଣ ଡ୍ରାଇଭର ଚଳାଉଥା'ନ୍ତା ! ମହାଭାରତର କୃଷ୍ଣ-ଅର୍ଜୁନ ପରି ମୁଁ ବି ତାଙ୍କ ରଥର ସାରଥୀ ସାଜିଥିଲି ।''

ଏକ ନୂଆ ଭାରତର ପରିକଳ୍ପନା କରିଥିଲେ ଜୟପ୍ରକାଶ ନାରାୟଣ । ତାଙ୍କ ନେତୃତ୍ୱରେ କେନ୍ଦ୍ରରେ ପ୍ରଥମ ଅଣକଂଗ୍ରେସ ସରକାର ଗଠନ ହେଲା । ଧର୍ମର ଯୁଦ୍ଧରେ ସେ ବିଜୟୀ ହେଲେ । ଜୟପ୍ରକାଶଙ୍କ ଗାଡ଼ିରେ ଡ୍ରାଇଭିଂ କରିବା ନେଇ କିଏ କେତେ କଥା କହିଲେ । ହେଲେ ବିଜୁ ପଟ୍ଟନାୟକ ଏ ନେଇ ଯେଉଁ ଆତ୍ମସନ୍ତୋଷ ପାଇଥିଲେ, ତାହା ଅନେକଙ୍କ ଆଗରେ ପ୍ରକାଶ କରିଥିଲେ । ଏହା ହିଁ ଥିଲା ବଡ଼ପଣ । ଏହାଦ୍ୱାରା ବି ତାଙ୍କ ଭିତରର ମହାନତା ଆପେ ଆପେ ପ୍ରକଟିତ ହେଉଥିଲା ।



# ହୀରାକୁଦରୁ ପାଣି ଛାଡ଼ିବାକୁ
# ସିଧାସିଧା ମନାକଲେ

ଘମାଘୋଟ ବର୍ଷା । ଘରିଆଡ଼େ ବନ୍ୟା । ମହାନଦୀ ଉବୁଟୁବୁ । ଏହା ୧୯୬୨ ମସିହାର କଥା । ବିଜୁବାବୁ ମୁଖ୍ୟମନ୍ତ୍ରୀ ଥା'ନ୍ତି । ପାଣିପାଗ ସୂଚନା କେନ୍ଦ୍ର ସତର୍କ କରିଦେଲା ଯେ, ବର୍ତ୍ତମାନ ହୀରାକୁଦ ବନ୍ଧର ଅବସ୍ଥା ଟଳମଳ । କେତେବେଳେ କ'ଣ ଘଟିବ, କହିହବନି । ବନ୍ଧର କର୍ତ୍ତୃପକ୍ଷ ଚାହିଁଲେ ବନ୍ଧର ନିରାପତ୍ତା ଦୃଷ୍ଟିରୁ ତୁରନ୍ତ ଜଳ ନିଷ୍କାସନ କରାଯିବା ଦରକାର । ଏ ନେଇ ସେ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଲେ । ଗୋଟିଏ ପଟେ ଜଳ ନିଷ୍କାସନ ନ କଲେ ବନ୍ଧ ଭାଙ୍ଗିଯିବ, ନଚେତ୍ ଜଳ ଛାଡ଼ିଲେ ତଳିଅଞ୍ଚଳ ବୁଡ଼ି ଲକ୍ଷଲକ୍ଷ ଲୋକଙ୍କ ଧନଜୀବନ ନଷ୍ଟ ହୋଇଯିବ । କେତେ ଲୋକ ଗୃହଶୂନ୍ୟ ହେବେ । ଗାଈଗୋରୁ ଭାସିଯିବେ । କଟକର ଚିହ୍ନବର୍ଣ୍ଣ ରହିବନି । ବଡ଼ ଧର୍ମସଙ୍କଟରେ ପଡ଼ିଗଲେ ବିଜୁବାବୁ । ଶେଷରେ ଦୃଢ଼ ସାହସର ସହ କହିଲେ– ''ନା, ପାଣି ଛାଡ଼ନି । ବନ୍ଧର କିଛି ବି ହବନି । ମୋ ଲୋକଙ୍କୁ ଅସହାୟ ଅବସ୍ଥାରେ ଦେଖିବାକୁ ଚାହେଁନି । ବନ୍ଧ ତିଆରି ହୋଇଛି ଲୋକଙ୍କ ପାଇଁ । ଲୋକେ ଯଦି ବନ୍ଧ ପାଇଁ ବେଘର ହେବେ, ତାହାହେଲେ ସେ ବନ୍ଧ ଥାଇ ଲାଭ କ'ଣ ?''

ସ୍ପଷ୍ଟ ନିର୍ଦ୍ଦେଶ ଦେଲେ ଜଳ ନ ଛାଡ଼ିବାକୁ । ବନ୍ଧ ଭାଙ୍ଗିଗଲେ ମୁଁ ତିଆରି କରିଦେଇପାରିବି । କିନ୍ତୁ ଲକ୍ଷଲକ୍ଷ ଲୋକଙ୍କ ଜୀବନ ସହ ଖେଳିପାରିବିନି । ଆକାଶ ମେଘାଚ୍ଛନ୍ନ । କେତେବେଳେ ପୁଣି ବର୍ଷିଯିବ । ବନ୍ଧର ପରିସ୍ଥିତି ସଙ୍ଗୀନ । ଯନ୍ତ୍ରୀମାନେ ପ୍ରମାଦ ଗଣୁଥା'ନ୍ତି । ମୁଖ୍ୟମନ୍ତ୍ରୀଙ୍କ କଥାରେ ସନ୍ତୁଷ୍ଟ ନ ହୋଇ କେନ୍ଦ୍ରର ପରାମର୍ଶ ଲୋଡୁଥା'ନ୍ତି । କିନ୍ତୁ କିଛି ବି ଉତ୍ତର ନାହିଁ । ବିଜୁବାବୁ ପୂରା ନିରବ ଓ ନିର୍ବିକାର । ତାଙ୍କର ସେଇ ଅଟକ ଉକ୍ତି– ପାଣି ଛାଡ଼ିବାକୁ ଅନୁମତି ଦେଇ ମୁଁ ଆମ ଲୋକଙ୍କ ଦୁର୍ଦ୍ଦଶା ଦେଖିବାକୁ ଚାହେଁନା । ସତକୁ ସତ ବିଜୁଙ୍କ ଅନୁମାନ ସତ ହେଲା । ଆକାଶରୁ

ମେଘ ହଟିଯାଇ ଫର୍ଚ୍ଚା ଦିଶିଲା । ପାଣି କମିଲା । ଯନ୍ତ୍ରୀମାନଙ୍କୁ ଆଉ ଦ୍ୱନ୍ଦ୍ୱରେ ପଡ଼ିବାକୁ ହେଲାନି । ବିଜୁବାବୁ ସେଦିନ ହୀରାକୁଦ ଯନ୍ତ୍ରୀମାନଙ୍କ ପାଇଁ ଯେପରି ଭବିଷ୍ୟତ ଦ୍ରଷ୍ଟା ପାଲଟିଥିଲେ, ତାହା ତାଙ୍କର ଦୂରଦୃଷ୍ଟି ଓ ସମୟାନୁମୋଦିତ କାର୍ଯ୍ୟ ବୋଲି କୁହାଯାଇପାରେ ।



# ବିମାନରେ ବ୍ରିଟିଶ୍ ଅଧିକାରୀଙ୍କୁ ଠିଆ କରାଇଲେ

ବିଜୁବାବୁ ଥିଲେ ବ୍ରିଟିଶ୍ ରୟାଲ ଏୟାରଫୋର୍ସର ଜଣେ ଦକ୍ଷ ପାଇଲଟ । ସେତବେଳର ବଡ଼ଲାଟ ୱାଭେଲ୍ ମଧ ତାଙ୍କୁ ଭଲ ପାଉଥିଲେ ଓ ତାଙ୍କ ଦକ୍ଷତାର ପ୍ରଶଂସା କରୁଥିଲେ । ଏକଦା ଜଣେ ଗର୍ବୀ ବ୍ରିଟିଶ୍ ଅଧିକାରୀଙ୍କୁ ବିମାନରେ ଦିଲ୍ଲୀରୁ କୁଏତ ନେଇଯିବାର ଥାଏ । ବିଜୁବାବୁ ମଧ ପ୍ରସ୍ତୁତ ଥା'ନ୍ତି । ଏହି ସମୟରେ ସେହି ବ୍ରିଟିଶ୍ ସାମରିକ ଅଧିକାରୀ ଜଣକ ବିମାନ ପାଖରେ ପହଞ୍ଚିଲେ । ପଚାରିଲେ– "ତାଙ୍କର ପାଇଲଟ କିଏ ?" ବ୍ରିଟିଶ୍ କର୍ମଚାରୀମାନେ ବିଜୁବାବୁଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ– "ଏ ହେଉଛନ୍ତି ଆପଣଙ୍କର ପାଇଲଟ୍ ।" ତାଙ୍କର ଧାରଣା ଥିଲା ଯେ, ତାଙ୍କୁ ନେଇଯିବା ପାଇଁ କେହି ବ୍ରିଟିଶ୍ କିମ୍ବା ଆମେରିକୀୟ ପାଇଲଟ୍ ଥିବେ । ସେ ବିଜୁବାବୁଙ୍କୁ ଦେଖି ହଠାତ୍ ଚିହିଁକି ଉଠିଲେ– "ଏ ବ୍ଲଡ଼ି ଇଣ୍ଡିଆନ୍ ପାଇଲଟ୍ ମୋତେ ନେବ ।" ସେ କ୍ରୋଧ ଜର୍ଜରିତ ହୋଇଉଠିଲେ । ଅନ୍ୟ ସହକାରୀ ଅଧିକାରୀ ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥା'ନ୍ତି । ସେ ବଡ଼ଲାଟଙ୍କୁ ମଧ ବିମାନରେ ନିଅନ୍ତି । ବିଜୁବାବୁ କିଛି ଦୂରରେ ଠିଆହୋଇ ଚୁପଚାପ୍ ସବୁ ଶୁଣୁଥା'ନ୍ତି । ତାଙ୍କର ରକ୍ତ ଗରମ ହୋଇଯାଉଥାଏ । କିନ୍ତୁ ସବୁ ରାଗକୁ ଚାପିରଖି ସେ ସୁଯୋଗକୁ ଅପେକ୍ଷା କରିଥା'ନ୍ତି । ଅନ୍ୟପଟେ ବଡ଼ଲାଟଙ୍କୁ ନେବାଆଣିବା କରିବା ଓ ବଡ଼ଲାଟ, ବିଜୁବାବୁଙ୍କୁ ଭଲପାଉଥିବା କଥା ଶୁଣି ସାମରିକ ଅଧିକାରୀ ଜଣକ ଅନିଚ୍ଛାସତ୍ତ୍ୱେ ରାଜିହେଲେ । ବିଜୁ କର୍ଣ୍ଣେଲଙ୍କୁ ଖୁବ୍ ଭଲଭାବରେ ବିମାନ ଭିତରକୁ ପାଛୋଟି ନେଲେ । ପରେ ବିମାନକୁ ଅନନ୍ତ ଆକାଶକୁ ଉଡ଼ାଇ ନେଲେ । ଦିଲ୍ଲୀଠାରୁ ବିମାନ କିଛିଦୂର ଉଡ଼ିବାପରେ ବିଜୁ ତାଙ୍କର ସହକାରୀ ଚାଳକଙ୍କୁ ନିଜ ସିଟ୍‌ରେ ବସାଇ କର୍ଣ୍ଣେଲଙ୍କ ପାଖକୁ ଗଲେ । ଚଢ଼ାଗଳାରେ ପଚାରିଲେ– "କ'ଣ କହୁଥିଲ ? ବ୍ଲଡ଼ି ଇଣ୍ଡିଆନ୍! ମୁଁ ଏ ଜାଗାର ମାଲିକ କହୁଛି– ଠିଆହୁଅ ! ମୁଁ ତୁମକୁ ଆଦେଶ ଦେଉଛି । ଜଲଦି ଠିଆ ହୁଅ ।" ବ୍ରିଟିଶ୍ ଅଫିସର ଜଣକ କ୍ଷୁବ୍ଧହୋଇ କହିଲେ– "କାହିଁକି ମୁଁ ଠିଆହେବି ।" ବିଜୁବାବୁ

ଆହୁରି ରାଗିଯାଇ କହିଲେ– ''ତୁମେ ମୋତେ ଓ ମୋ ଦେଶବାସୀଙ୍କୁ ବ୍ଲଡ଼ି ଇଣ୍ଡିଆନ କହିଛ ? ମୁଁ କହୁଛି– ତୁମେ ବ୍ଲଡି ବ୍ରିଟିଶ୍ କର୍ଣ୍ଣେଲ । ମୋର ଆଦେଶ– ତୁମେ ଠିଆହୁଅ । ମୁଁ ଆଦେଶ ନ କରିବା ପର୍ଯ୍ୟନ୍ତ ବସିବନି ।'' ବିଜୁଙ୍କ ଧମକରେ ଡରି ନ ଯାଇ ବ୍ରିଟିଶ୍ ଅଧିକାରୀ ଜଣକ ପିସ୍ତଲ ବାହାର କଲେ । ଧମକ ଦେଲେ– ''ଏଇନେ ଋହିଁଲେ ତୋତେ ଗୁଳି କରିଦେବି ।'' ବିଜୁ ପଟ୍ଟନାୟକ ଡରିବା ଲୋକ ନୁହଁନ୍ତି । ତତ୍‌କ୍ଷଣାତ୍ କହିଲେ– ''ମୁଁ ବି ଋହିଁଲେ ଏ ବିମାନ ସହ ତୁମକୁ ଧୂଳିସାତ୍ କରିଦେବି । ମୁଁ ଋକିରି କରିଛି ବୋଲି କ'ଣ ମୋ ମୁଣ୍ଡ ବିକି ଦେଇଛି । ତୁମ ୱାଭେଲ ସାହେବଙ୍କୁ ପଋରିବ, ମୁଁ କିଏ ଆଉ କ'ଣ କରିପାରେ ?''

ବ୍ରିଟିଶ୍ ଅଧିକାରୀ ଜଣକ ଭାବୁଥିଲେ, ହୁଏତ ପିସ୍ତଲ ଦେଖାଇଲେ ବିଜୁ ପଟ୍ଟନାୟକ ଡରିଯିବେ । କିନ୍ତୁ ବିଜୁଙ୍କ ପାଲଟା ଉତ୍ତର ଶୁଣି ତାଙ୍କର ଆଉ କିଛି କହିବାକୁ ଶକ୍ତି ଯୁଟିଲାନି । ଅପମାନ ସହିନପାରି ବିଜୁଙ୍କ କଥାରେ ସେ ଠିଆ ହୋଇରହିଲେ । କିଛି ସମୟପରେ ବିମାନଟି କୁଏଟ ବିମାନଘାଟିରେ ପହଞ୍ଚିଲା । ସାମରିକ ଅଧିକାରୀ ଜଣକ ମନରେ ପାଞ୍ଚୁଥା'ନ୍ତି, ବିମାନ ପହଞ୍ଚିବାପରେ ବିଜୁଙ୍କୁ ପାନେ ଦେବେ । ଆବଶ୍ୟକ ହେଲେ ଗୁଳିକରି ଉଡ଼ାଇ ଦେବେ । ଇଏ ସାମାନ୍ୟ ଭାରତୀୟ କ'ଣ ମୋ କବ୍‌ଜାରୁ ବଳିଯିବ । ବିଜୁ କିନ୍ତୁ ଖୁବ୍ ଚତୁର । ସେ ଅଧିକାରୀଙ୍କ ମନ କଥା ଜାଣିବା ଆଉ ବାକି ରହିଲାନି । ସେ ବ୍ରିଟିଶ୍ ଅଧିକାରୀଙ୍କୁ ସେଠାରେ ଓହ୍ଲାଇ ଦେଇ ତତ୍‌କ୍ଷଣାତ୍ କେଉଁଠି ଅନ୍ତର୍ଦ୍ଧାନ ହୋଇଗଲେ । ଏହି ଘଟଣାକୁ ନେଇ ବ୍ରିଟିଶ୍ ଅଧିକାରୀ ଜଣକ ଅଦାଲତରେ ଏକ କେଶ୍ ଦାୟର କଲେ । ବ୍ରିଟିଶ୍ ଅଧିକାରୀ ଓ ବିଜୁବାବୁ କୋର୍ଟରେ ହାଜର ହେଲେ । କାଠଗଡ଼ାରେ ଠିଆ ହୋଇଥିବା ବିଜୁବାବୁଙ୍କୁ ପଋରାଗଲା– ''ତୁମ ବିରୋଧରେ ଏ ଯେଉଁ ଅଭିଯୋଗ ଆସିଛି, ତାହା କ'ଣ ସତ୍ୟ ?'' ବିଜୁ ଦୃଢ଼ତାର ସହ ଉତ୍ତର ଦେଲେ– ''ହଁ, ଏହା ପୁରା ସତ୍ୟ ।'' ପୁଣି କୋର୍ଟ ପଋରିଲେ– ''ତୁମେ ଏପରି କାହିଁକି କଲ ?'' ବିଜୁ କହିଥିଲେ– ''ସେ ମୋତେ ପ୍ରଥମେ ବ୍ଲଡ଼ି ଇଣ୍ଡିଆନ୍ କହି ଅପମାନିତ କରିଥିଲେ ।'' ବିଋରପତି ଉଭୟଙ୍କୁ ଦିନକପାଇଁ ଜେଲଦଣ୍ଡ ଦେଲେ । ହେଲେ ବିଜୁଙ୍କର ସେ ଦିନର ସେ ସାହସିକତା ତାଙ୍କ ଦେଶପ୍ରେମର ଚରମ ନିଦର୍ଶନ ।



## ଢେଲା ମାରିଥିବା ପିଲାକୁ ଦେଲେ ପ୍ୟାଣ୍ଟସାର୍ଟ

ଥରେ ଭୋଟ ପ୍ରଚାରରେ ଯାଇଥା'ନ୍ତି ବିଜୁବାବୁ । ଏକ ଗ୍ରାମାଞ୍ଚଳରେ ସେ ପ୍ରଚାର କରୁଥିବାବେଳେ, ଲୋକେ ତାଙ୍କୁ ଦେଖିବାକୁ ଭିଡ଼ ଲଗାଇଥା'ନ୍ତି । 'ବିଜୁ ପଟ୍ଟନାୟକ ଆଇଚି' କହି ଗହଳି ଜମାଉଥା'ନ୍ତି । ବିଜୁ ପଟ୍ଟନାୟକ ମଞ୍ଚରେ ଠିଆ ହୋଇ ଭାଷଣ ଦେଉଥା'ନ୍ତି । ଏତିକି ବେଳେ କିଛି ଲୋକ ଗୋଟିଏ ପିଲାକୁ ଶିଖାଇ ଦେଲେ, ତୁ ଯା' ବିଜୁ ପଟ୍ଟନାୟକଙ୍କୁ ଢେଲା ମାର । ପିଲାଟି ବି ତାଙ୍କ ବୁଦ୍ଧିରେ ପଡ଼ି ବିଜୁବାବୁଙ୍କୁ ଲକ୍ଷ୍ୟ କରି ଏକ ଢେଲାମାରି ଦଉଡ଼ିବାକୁ ଲାଗିଲା । ବିଜୁବାବୁ ବି ପଛରେ ଧରିବାକୁ ଦୌଡ଼ିଲେ । ମାତ୍ର ସେ ଭୟ ପାଇ ଗୋଟେ ଗଛ ଉପରକୁ ଚଢ଼ିଗଲା । ବିଜୁବାବୁ ତାକୁ ଗେହ୍ଲେଇ କହିଲେ– ''ଆ' ତଳକୁ ଆ... ।'' ପିଲାଟି ଉତ୍ତର ଦେଲା– ''ନା', ମୁଁ ତଳକୁ ଓହ୍ଲେଇଲେ ତୁମେ ମୋତେ ମାରିବ !'' ବିଜୁ ତା'କୁ ପୁଣି କହିଲେ– ''ତୁ ତଳକୁ ଚାଲି ଆ' । ମୁଁ ଜମାରୁ ମାରିବିନି ।'' ପିଲାଟି ତଳକୁ ଆସିଲା । ବିଜୁବାବୁ ଜାଣିଛନ୍ତି– ଛୋଟ ପିଲାଟିଏ । ତା'ର ବା ବୁଦ୍ଧି କେତେ ? କିଛି ବିରୋଧୀ ତାକୁ ଶିଖାଇ ଦେଇଛନ୍ତି । ତେଣୁ ସେ ଢେଲା ମାରିଲା । ବିଜୁବାବୁ ତାକୁ ସ୍ନେହରେ ସଭାମଞ୍ଚକୁ ନେଲେ । କହିଲେ– ''ସାବାସ ପୁଅ । ତୁ ଖୁବ୍ ସାହସୀ ହେବୁ । ଓଡ଼ିଶାର ନାଁ ରଖିବୁ । ତୁ ବିଜୁ ପଟ୍ଟନାୟକ ଉପରେ ଢେଲା ମାରିଛୁ । ଏହା କିଛି କମ୍ କଥା ନୁହେଁ । ମୋର ତୋ'ଭଳି ପିଲା ଦରକାର ।''

ବିଜୁବାବୁ ସେଦିନ ସେଇ ପିଲାଟିକୁ ପ୍ୟାଣ୍ଟସାର୍ଟ କିଣି ଦେଲେ । ବିଜୁବାବୁଙ୍କ ଏଇ ଘଟଣାଟି ତାଙ୍କ ଦରଦୀ ମନୋଭାବକୁ ସୂଚାଇଥାଏ । ଏଇଥିରୁ ଜଣାପଡ଼େ, ପିଲାଙ୍କ ପ୍ରତି ବିଜୁଙ୍କର କେତେ ଭଲପାଇବା ।



# ଦେବାରେ ଆନନ୍ଦ, ନେବାରେ ନୁହେଁ

ମଧୁବାବୁଙ୍କ ପରି ବିଜୁବାବୁ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । କାହା ପାଖରେ ହାତପାତିବା କି ମୁଣ୍ଡ ନୁଆଁଇବା, ତାଙ୍କ ଯାତକରେ ନ ଥିଲା । ନେବାରେ ନୁହେଁ, ଦେବାରେ ସେ ଖୁବ୍ ଆନନ୍ଦ ପାଉଥିଲେ । ୧୯୮୨ ମସିହାର କଥା । ବିଜୁବାବୁ ତାଙ୍କର କରୋନାରୀ ବାଇପାସ ସର୍ଜରୀ ପାଇଁ ଆମେରିକା ଯିବାର ଥାଏ । ଆର୍ଥିକ କ୍ଷେତ୍ରରେ ବି ଅସୁବିଧା ଥାଏ । ଏକଦା ବିରାଟ ବିଶ୍ୱ ସାମ୍ରାଜ୍ୟର ଅଧିକାରୀ ଏକପ୍ରକାର ନିଃସ୍ୱ ହୋଇପଡ଼ିଥା'ନ୍ତି । ସେତେବେଳେ ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ଜାନକୀବଲ୍ଲଭ ପଟ୍ଟନାୟକ ଥା'ନ୍ତି ମୁଖ୍ୟମନ୍ତ୍ରୀ । ସେ ବିଜୁବାବୁଙ୍କ ଚିକିତ୍ସା ପାଇଁ ଚିନ୍ତିତ ଥିଲେ । ଚିକିତ୍ସା ଖର୍ଚ୍ଚ ନେଇ କିଛି ଟଙ୍କା ବି ମଞ୍ଜୁର କରିଥିଲେ । ହେଲେ ରାଜ୍ୟ ରାଜକୋଷରୁ ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଅର୍ଥ କେମିତି ଖର୍ଚ୍ଚ କରିବେ ? ତା'ଛଡ଼ା ଅନ୍ୟର ଦୟାର ପାତ୍ର ହେବାକୁ ସେ ମନ କରିନଥିଲେ । ମନା କରିଦେଲେ– ସେ ଏହି ଅର୍ଥ ନେବେ ନାହିଁ ।

ଅନ୍ୟ ଏକ ଘଟଣାରେ ବିଜୁ ପଟ୍ଟନାୟକ ଥା'ନ୍ତି ବିରୋଧୀଦଳର ନେତା । ଅର୍ଥମନ୍ତ୍ରୀ ବସନ୍ତ ବିଶ୍ୱାଳ ବିଜୁବାବୁଙ୍କ ବିରୋଧରେ ଅପପ୍ରଚାର ଚଳାଇଥା'ନ୍ତି । ବିଜୁବାବୁଙ୍କୁ ବିରୋଧୀଦଳ ନେତା ହିସାବରେ ଦୁଇଟି ଭଲଗାଡ଼ି ଦିଆଯିବା କଥା । କିନ୍ତୁ ଦିଆଯାଇଥାଏ ଏକ ପୁରୁଣା ଗାଡ଼ି, ଯାହା ବାରମ୍ୱାର ଖରାପ ହେଉଥାଏ । ସେ ଏହାକୁ ମରାମତି କରି ଚଲାଉଥା'ନ୍ତି । ହେଲେ ବି ତାଙ୍କ କାର୍ଯ୍ୟାଳୟର କର୍ମଚାରୀମାନେ ଏ ନେଇ ବହୁ ଅସୁବିଧା ଭୋଗୁଥିଲେ । ଏକଦା ବିଜୁବାବୁ ଏ ସଂପର୍କରେ ଏକ ଚିଠି ଲେଖି ଅର୍ଥମନ୍ତ୍ରୀ ଓ ମୁଖ୍ୟଶାସନ ସଚିବଙ୍କୁ କହିଲେ । କିନ୍ତୁ ଏହି ଚିଠିପତ୍ର ବିନିମୟକୁ ଅର୍ଥମନ୍ତ୍ରୀ ସମ୍ୱାଦପତ୍ରରେ ପ୍ରକାଶ ପାଇଁ ଦେଇ ବିଜୁବାବୁଙ୍କୁ ବାରମ୍ୱାର ଅପମାନ କରୁଥିବାରୁ ସେ ଏ ନେଇ ମନରେ କ୍ଷୋଭ ପ୍ରକାଶ କରିଥିଲେ । ଆଉ ଶେଷରେ ନିଷ୍ପତ୍ତି ନେଇଥିଲେ ଯେ, ସେ ସରକାରୀ ଗାଡ଼ି ଫେରାଇଦେବେ । ଶେଷରେ

ବିରୋଧୀଙ୍କ ମୁହଁରେ କଳାବୋଳି ସେ ଆଉ ସରକାରୀ ଗାଡ଼ି ବ୍ୟବହାର କରିବେନି ବୋଲି **ସ୍ପଷ୍ଟ** କରିଦେଇଥିଲେ । ଏପରି ନିଷ୍ପତ୍ତି ସେଦିନ ବିରୋଧୀଙ୍କୁ ବି ତାଜୁବ କରିଦେଇଥିଲା । ପଙ୍କିଳ ନିମ୍ନ ରାଜନୀତି ଭିତରକୁ ପଶିବା ଲୋକ ନ ଥିଲେ ବିଜୁବାବୁ । ତାଙ୍କର ସ୍ୱାଭିମାନ ତାଙ୍କ ବ୍ୟକ୍ତିତ୍ୱକୁ ଆହୁରି ଦୀପ୍ତିମୟ କରିଥିଲା ।



# ମୁଁ କେମିତି ଅଜା ହେଲି ?

ଶେଷ ମୁଖ୍ୟମନ୍ତ୍ରୀତ୍ୱ ସମୟ । ବିଜୁବାବୁ କେନ୍ଦୁଝର ଗସ୍ତରେ ଯାଇଥା'ନ୍ତି । ସେଠାରେ ଚିଲଡ୍ରେନ୍ସ ପାର୍କ ଉଦ୍‌ଘାଟନ ହେବାର ଥାଏ । ଏହି ଉତ୍ସବରେ କିଛି ଅନୁଷ୍ଠାନ ବିଜୁବାବୁଙ୍କୁ ଫୁଲତୋଡ଼ା ଦେବାର ବ୍ୟବସ୍ଥା ହୋଇଥାଏ । ଏହି ତାଲିକାରେ ଥାଏ କେନ୍ଦୁଝର ଜିଲ୍ଲାସ୍ତରୀୟ ଶିଶୁ ସାହିତ୍ୟ ସଂସଦ । ସଭା ଆରମ୍ଭରେ କିଛିସମୟ ପରେ ଏହାର ପାଳି ପଡ଼ିଲା । ଅନୁଷ୍ଠାନ ପକ୍ଷରୁ ଫୁଲତୋଡ଼ା ଦେବାପାଇଁ ମଞ୍ଚକୁ ଉଠିଲେ ଦୁଇଜଣ । ଫୁଲତୋଡ଼ା ଦେଲେ । ତା'ସହ 'ପିଲାଙ୍କ ବିଜୁଅଜା' ବହିଟି ବଢ଼ାଇ ଦେଲେ । ବିଜୁବାବୁ ବହିଟିକୁ କିଛି ସମୟ ତୀର୍ଯ୍ୟକ୍ ଦୃଷ୍ଟିରେ ଚାହିଁଲେ । କହିଲେ– ''ଏ ବହିଟି କିଏ ଲେଖିଛି ?'' ମଞ୍ଚରେ ଥିବା ଦୁଇଜଣଙ୍କ ମଧ୍ୟରୁ ଜଣେ ଶିଶୁ ସାହିତ୍ୟିକ କରୁଣାକର ବାରିକଙ୍କ ଆଡ଼କୁ ହାତ ବଢ଼ାଇ ଦେଖାଇ ଦେଲେ । ବିଜୁବାବୁ କହିଲେ– ''ହଇଓ ! ତମେ ମୋତେ ବୁଢ଼ା କରିଦେଲ ? ମୁଁ କେମିତି ଅଜା ହେଲି କହିଲ ?'' ବିଜୁବାବୁଙ୍କ ଏପରି ପ୍ରଶ୍ନରେ ସମସ୍ତେ ହଡ଼ବଡ଼େଇ ଗଲେ । କାହାରି ତୁଣ୍ଡରୁ ଉଁ ଚୁଁ... କିଛି ବାହାରିଲାନି । କିଛି ସମୟ ପରେ ବିଜୁବାବୁ ପୁଣି କହିଲେ– ''ହଉ ହଉ ହେଲା । ଭଲ କାମ କରୁଛ, ଆଗକୁ ଆଗାଅ ।'' ପୁଷ୍ପଗଛ ଦିଆସରିବା ପରେ ସମସ୍ତେ ମଞ୍ଚରୁ ଓହ୍ଲାଇ ଆସିଲେ । ବିଜୁବାବୁ ଭାଷଣ ଦେବା ଆରମ୍ଭ କଲେ । କଥା ପ୍ରସଙ୍ଗରେ କହିଲେ– ''ସତରେ କ'ଣ ମୁଁ ବୁଢ଼ା ହୋଇଗଲିଣି ଯେ, ଜଣେ ଲେଖକ ଲେଖିଛି 'ପିଲାଙ୍କ ବିଜୁଅଜା' । କିନ୍ତୁ ମନେରଖ, ମୁଁ ବୁଢ଼ା ହେଲେ ବି ଯୁବକ ! ମୋ ସହ ମିଶି କାମ କର । ଆମେ ସମସ୍ତେ ମିଶି ଓଡ଼ିଶାକୁ ଆଗେଇନେବା ।'' ବିଜୁବାବୁ ନିଜକୁ କେବେ ବୃଦ୍ଧ ବା ବୟସ୍କ ମନେ କରୁନଥିଲେ । ତାଙ୍କ ଭିତରେ ସର୍ବଦା ସେଇ ଯୁବ ସୁଲଭତା ଥିଲା । ସେ ଉଦ୍ଦାମ, ନିର୍ଭିକ, ସାହସୀ ଓ ବେପରୁଆ ଥିଲେ । ଜଣେ ବୀର ସାଜି ଓଡ଼ିଆ ଜାତିକୁ ଆଗେଇ ନେବାରେ ସେ ସମସ୍ତଙ୍କ ଆଗରେ ଥିଲେ ।



# ଦିଲ୍ଲୀପ ପୂର୍ବଜନ୍ମରେ ମୋ ପୁଅ ଥିଲା

ବିଜୁବାବୁ ଭାରତୀୟ ରାଜନୀତିରେ ଜଣେ ଦୃଢ଼ ନେତା ଯେ ଥିଲେ ତା'ନୁହେଁ, ତାଙ୍କ ହୃଦୟ ଥିଲା ଖୁବ୍ କୋମଳ । ଟିକିଏ ସ୍ନେହ ଶ୍ରଦ୍ଧାରେ ସେ ଆପଣାପଣରେ ବାନ୍ଧିହୋଇ ଯାଉଥିଲେ । ଏକଦା ରାଜ୍ୟସଭା ପଦ ଖାଲିଥିବାରୁ ବିଜୁବାବୁ ଦିଲ୍ଲୀପ ରାୟଙ୍କୁ ପ୍ରାର୍ଥୀକରି ଦିଲ୍ଲୀ ପଠାଇଲେ । ବିଜୁବାବୁ ତାଙ୍କୁ ରାଜନୀତିକୁ ଆଣିଥିଲେ ଓ ଖୁବ୍ ଭଲ ପାଉଥିଲେ ମଧ୍ୟ । ଦିଲ୍ଲୀରେ ଦିଲ୍ଲୀପଙ୍କୁ କ୍ୱାର୍ଟର ମିଳିଲା । ସେ ବିଜୁବାବୁଙ୍କୁ ଅନୁରୋଧ କରି କହିଲେ– ''ଆପଣ ମୋ ପାଖରେ ରହିଯା'ନ୍ତୁ ।'' ବିଜୁବାବୁଙ୍କର ନିଜର ଘର, କ୍ୱାର୍ଟର ସବୁ କିଛି ଥିଲା । ପତ୍ନୀ ଓ ପିଲାମାନେ ମଧ୍ୟ ଦିଲ୍ଲୀରେ ରହୁଥିଲେ । କିନ୍ତୁ ଦିଲ୍ଲୀପଙ୍କ କଥାକୁ ସେ କାଟିପାରି ନ ଥିଲେ । ଦିଲ୍ଲୀପ ବି ବିଜୁବାବୁଙ୍କ ରହିବା ଓ ଖାଇବା ସବୁରେ ଯତ୍ନ ନେଉଥା'ନ୍ତି । ସେହି କ୍ୱାର୍ଟର ପ୍ରତି ବିଜୁବାବୁଙ୍କର ଏପରି ମୋହ ବଢ଼ିଗଲା ଯେ, ସେ ବହୁଦିନ ସେଠାରେ ଅଠା ପରି ଲାଖି ରହିଗଲେ । ଦିଲ୍ଲୀପଙ୍କ ସହ ତାଙ୍କର ରାଜନୀତିକ ସଂପର୍କ । କିନ୍ତୁ ଏଇଠି କାହିଁକି କେଜାଣି ତାଙ୍କୁ ପାରିବାରିକ ସଂପର୍କ ଭଳି ଲାଗିଲା । ପରବର୍ତ୍ତୀ ସମୟରେ ଏକ ସାକ୍ଷାତକାରରେ ସେ ଏକଥା ବି କହିଥିଲେ ଯେ, 'ଦିଲ୍ଲୀପ ପୂର୍ବଜନ୍ମରେ ମୋର ପୁଅ ଥିଲା' । ଖୁବ୍ ଆତ୍ମୀୟତା ଆଉ ଭଲ ପାଇବା ଭିତରେ ଦିଲ୍ଲୀପ ତାଙ୍କର ସେବା ଶୁଶ୍ରୂଷା କରୁଥା'ନ୍ତି । ପାଖରେ ପରିବାର ନ ଥିଲେ ବି ପରିବାରଠାରୁ ପାଉଥିବା ସବୁ ସେବା ଆଉ ଦାୟିତ୍ୱ ସେ ଦିଲ୍ଲୀପଙ୍କଠାରୁ ପାଉଥିଲେ । ଏକଥା ବିଜୁବାବୁ କଥା ପ୍ରସଙ୍ଗରେ ଅନେକ ଥର କହିଛନ୍ତି, ଯାହା ତାଙ୍କ ଜୀବନର ଅବିସ୍ମରଣୀୟ ଘଟଣା ।



# ଟଙ୍କାଏ ଦରମାରେ ବିଡିଓ ନିଯୁକ୍ତି

ହଠାତ୍ ଦିନେ ବିଜୁବାବୁ ଜଣେ ଯୁବଇଞ୍ଜିନିୟରଙ୍କୁ ପାଖରେ ପାଇ ଏଣୁତେଣୁ ଗୁଡ଼ାଏ ପ୍ରଶ୍ନ କଲେ । ପଚାରିଲେ– ଦେଶୀୟ ପଦ୍ଧତିରେ ଲୁହା ଉତ୍ତୋଳନ କରାଯାଇ ସେଥିରୁ କିପରି ଟାଙ୍ଗିଆ ଓ ଲଙ୍ଗଳ ତିଆରି ହୋଇପାରିବ ? ଯୁବ ଇଞ୍ଜିନିୟର ଜଣକ ବିଜୁବାବୁଙ୍କୁ ଗୋଟିଗୋଟି ବୁଝାଇ ଦେଉଥା'ନ୍ତି ଖୁବ୍ ସହଜ ଭାବେ । ସେ ତାଙ୍କ କଥାରେ ଏକଦମ୍ ଖୁସ୍ । ଅହର୍ନିଶ ଶିଳ୍ପର ସ୍ୱପ୍ନ ଦେଖୁଥିବା ବିଜୁବାବୁ ରାଜ୍ୟବାସୀଙ୍କ ଜୀବନ ଜୀବିକାକୁ ନେଇ ଅନେକ କିଛି ଚିନ୍ତା କରୁଥା'ନ୍ତି । ତେଣୁ ସେ ଯୁବକ ଜଣକୁ କହିଲେ– ''ତୁ ଏବେ କ'ଣ କରୁଛୁ? ତୋ'ପରି ପିଲା ମୋର ଦରକାର ।'' ସେତେବେଳର ଆଇ.ଏ.ଏସ୍ ଶିବରମଣଙ୍କୁ ଡକାଇଲେ । କହିଲେ– ''ଏ ପିଲାକୁ ବିଡିଓ ନିଯୁକ୍ତି ଦିଅ । ବାନର ସେନାରେ ଥିଲା । ଦେଶପାଇଁ ଲଢ଼ିଛି । ଇଏ ଭଲ କାମ କରିବ ।'' ଶିବରମଣ ଆଶ୍ଚର୍ଯ୍ୟହୋଇ ରହିଁଥା'ନ୍ତି । କିନ୍ତୁ ବିଜୁବାବୁଙ୍କ କଥାକୁ କାଟିବାକୁ ତାଙ୍କ ପାଖରେ ଯୁକ୍ତି ନାହିଁ ।

ତେଣୁ ପ୍ରଥମକରି ପ୍ରଶାସନିକ ସ୍ତରରେ ନିଷ୍ପତ୍ତି ପ୍ରକାଶ ପାଇ ଜଣେ ବେସରକାରୀ ବିଡିଓଙ୍କୁ ନିଯୁକ୍ତି ଦିଆଗଲା । ଏନେଇ ଓଡ଼ିଶା ପଞ୍ଚାୟତ ସମିତି ଆଇନ ମଧ୍ୟ ସଂଶୋଧନ କରାଗଲା । ତାଙ୍କର ପ୍ରମୁଖ କାମ ହେଲା ଗାଁ ଓ ସରକାରଙ୍କ ମଧ୍ୟରେ ସମନ୍ୱୟ ରଖି ଲୋକଙ୍କ ସ୍ୱାର୍ଥ ନେଇ କାମ କରିବେ । ଦରମା ମାତ୍ର ଟଙ୍କାଏ । କର୍ମସ୍ଥଳ ଥିଲା ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ବୈପାରୀଗୁଡ଼ା ବ୍ଲକ୍ । ବିଜୁବାବୁଙ୍କର ଏପରି ପ୍ରଚେଷ୍ଟା ଥିଲା ସାରା ଭାରତରେ ପ୍ରଥମ । ଯେଉଁ ଯୁବକ ଜଣକ ଏହି ବେସରକାରୀ ବିଡିଓ ଭାବେ ନିଯୁକ୍ତି ପାଇଥିଲେ, ସେ ହେଲେ ଏ.ଭି. ସ୍ୱାମୀ । ବୈପାରୀଗୁଡ଼ାରେ ମାତ୍ର ତିନିବର୍ଷ ବିଡିଓ ଭାବେ କାର୍ଯ୍ୟ କରିଥିଲେ ସ୍ୱାମୀଜୀ । ସେ ସରକାରୀ କଳକୁ ବ୍ୟବହାର କରିବା ସହ ଆଇନ ତ୍ରୁଟି ଦେଖୁଥିଲେ ତାହା ସରକାରଙ୍କୁ ଲେଖି ଜଣାଉଥିଲେ । ଏପରିକି ସେ ପଞ୍ଚାୟତରାଜ ବ୍ୟବସ୍ଥାରେ ୧୭ଟି ସଂଶୋଧନ ପ୍ରସ୍ତାବ ଦେଇଥିଲେ ।

ସେଥିରୁ ୧୦ଟି ପ୍ରସ୍ତାବ ୭୩ତମ ସମ୍ବିଧାନ ସଂଶୋଧନ ତାଲିକାରେ ଅନ୍ତର୍ଭୁକ୍ତ ହୋଇଥିଲା । ଏହି ସଂଶୋଧନ ଫଳରେ ପଞ୍ଚାୟତରାଜ ଅନୁଷ୍ଠାନଗୁଡ଼ିକ ସ୍ୱୟଂଶାସିତ ଅନୁଷ୍ଠାନ ଭାବେ କାର୍ଯ୍ୟ କରିବାର ପର୍ଯ୍ୟାପ୍ତ ସୁଯୋଗ ପାଇପାରିଲେ ।



# ମଜୁରୀ ବଢ଼ିଲା ଏଗାରରୁ ପଚିଶ

ନବେ ମସିହାର ଏକ ଶୀତ ସକାଳ । କେନ୍ଦୁଝର ଜିଲା ଆନନ୍ଦପୁର ଉପକଣ୍ଠର ଏକ ଗାଁ ଦେଇ ଯାଉଥା'ନ୍ତି ବିଜୁବାବୁ । ଗୋଟିଏ ଜାଗାରେ ରାସ୍ତା ଉପରେ ପୋଲ ତିଆରି ହେଉଥାଏ । ତଳପଟେ ଡାଇଭରସନ ଦେଇ ଗାଡ଼ିସବୁ ଯାଉଥାଏ । ବିଜୁବାବୁଙ୍କ ଗାଡ଼ି ବି ସେହି ଡାଇଭରସନ ଦେଇ ଯାଉଥିବାବେଳେ, ହଠାତ ସେ ଗାଡ଼ି ଅଟକାଇଲେ । ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ଦି'ଜଣ ମଜୁରିଆଙ୍କୁ ପାଖକୁ ଡାକିଲେ । ପଚାରିଲେ– ''ତୁମେମାନେ ସବୁ କେତେ ମଜୁରୀ ପାଉଚ ?'' ମଜୁରିଆମାନେ କହିଲେ– ''ଆଜ୍ଞା, ଏଗାର ଟଙ୍କା ମାତ୍ର । ସେଥିରେ ନିଜେ ଚଳି ହେଉନି କି ପରିବାର ଚଳାଇ ହେଉନି । ଯେନତେନ ପ୍ରକାରେ ଗୁଜୁରାଣ ମେଣ୍ଟାଉଛୁ !'' ବିଜୁବାବୁ ପୁଣି ପ୍ରଶ୍ନ କଲେ– ''ତା'ହେଲେ ଆଜି ଯାଏ କେମିତି ଚଳି ଆସୁଛ ?'' ଜଣେ ମଜୁରିଆ ଆଖିରେ ଲୁହ ଜକେଇ ଆସିଲା । କାନ୍ଦକାନ୍ଦ ହୋଇ କହିଲା, ''ଆଜ୍ଞା ! ସେମିତି ଚଳିଯାଉଛୁ ।'' ଏଥର ବିଜୁବାବୁ କିଛି ସମୟ କ'ଣ ଚିନ୍ତା କଲେ । କହିଲେ– ''ହଉ, ଯା' ତୋ କଥା ବୁଝିବା ।'' ଏହା କହି ବିଜୁବାବୁ ସେଇ ଜାଗା ଛାଡ଼ି ଆଗକୁ ଗଲେ । ହେଲେ ମଜୁରିଆମାନଙ୍କ ଭିତରେ ସେଦିନ ବିଜୁବାବୁଙ୍କର ଏହି ପ୍ରଶ୍ନ କେତୋଟି ଆନ୍ଦୋଳିତ ହେଉଥିଲା । ବିଜୁବାବୁ ତ କହିଦେଇ ଚାଲିଗଲେ । ହେଲେ ତାଙ୍କର ଦୁଃଖ ଫେରିବ କେବେ ? ସେତେବେଳେ ବିଜୁବାବୁ ସରକାରରେ ନ ଥା'ନ୍ତି । ତେଣୁ ଏପରି ଏକ ସମ୍ବେଦନଶୀଳ ଘଟଣାରେ ସେ ନାଚାର ।

ଦୁଇମାସ ବିତିଲା । ବିଜୁବାବୁ ମୁଖ୍ୟମନ୍ତ୍ରୀଭାବେ ଶପଥ ନେଲେ । ବିଧାନସଭାର ପ୍ରଥମ ଅଧିବେଶନରେ ତାଙ୍କର ସେହି ଦିନମଜୁରିଆର ଲୁହ ଛଳଛଳ ଆଖି ଦୁଇଟି ମନେପଡ଼ିଗଲା । ରାଜ୍ୟପାଳଙ୍କ ଅଭିଭାଷଣ ଉପରେ ଧନ୍ୟବାଦ ପ୍ରସ୍ତାବ ସଂକ୍ରାନ୍ତୀୟ ଆଲୋଚନାର ଉତ୍ତର ଦେଉଥିବା ବେଳେ, ସେ ଏହି ପ୍ରସଙ୍ଗ ଉଠାଇଥିଲେ । ଦରଦାମ ବୃଦ୍ଧି ସତ୍ତ୍ୱେ ମଜୁରିଆଙ୍କ ମଜୁରୀ ବଢୁନି । ଶେଷରେ ଏପରି ଏକ ଯୁଗାନ୍ତକାରୀ ପ୍ରସ୍ତାବ କାର୍ଯ୍ୟକାରୀ ହେଲା । ଏଗାରରୁ ପଚିଶକୁ ବଢ଼ିଲା ମଜୁରିଆଙ୍କ ମଜୁରୀ ।

■

# ପ୍ରିୟତମା ମୋ ମାଆ

ବିଜୁବାବୁ ସାମାନ୍ୟ ଅସୁସ୍ଥ ଥା'ନ୍ତି । ପାଖରେ ନାତୁଣୀ ବସିଥାଏ । ଝିଅ ଗୋଡ଼ ଚିପି ଦେଉଥାଏ । ବିଜୁବାବୁ ନାତୁଣୀକୁ ଆଉଁସି ଦେଇ କହିଲେ– ''ଆଲୋ ମା' ! ତୁ ବୋଉର ଗୋଡ଼ ଚିପି ଦେଉ ନା ନାହିଁ । ମା'ର ଗୋଡ଼ ଚିପିଦେବା ପୂଣ୍ୟକାମ । ଏଥିରେ କେବେ ଅବହେଳା କରିବୁନି ।'' ଏଥର ନାତୁଣୀ କହିଲା– ''ତୁମେ କ'ଣ ତୁମ ମା'ର ଗୋଡ଼ ଚିପି ଦେଇଥିଲ ?'' ବିଜୁବାବୁଙ୍କ ଆଖିରେ ଲୁହ ଢଳେଇ ଆସିଲା । କହିଲେ– ''ହଁ, ଆମେ ଭାଇଭଉଣୀ ସବୁ ସ୍କୁଲ୍‌ରୁ ଫେରୁଥିଲୁ । ଘର ପାଖରେ ପିଜୁଳିଗଛଟିଏ ଥାଏ । ବାପା କହନ୍ତି– ପିଜୁଳିଗଛରେ ଚଢ଼ିଯାଅ । ପେଟେ ପିଜୁଳି ଖାଇଦିଅ । ତା'ପରେ ଯାହା ଖାଇବା । ତା'ଛଡ଼ା ସବୁଦିନ ରାତିରେ ଆମେ ଶୋଇବା ବେଳକୁ ମା'ର ଗୋଡ଼ ଚିପି ଦେଉଥିଲୁ । ଏଥିରେ କେବେ ବି ଅବହେଳା କରିନୁ । କିନ୍ତୁ ଆଜି ମୋ ମା' ନାହିଁ ।''

ଏହା କହିବାବେଳେ ଶ୍ୱାସରୁଦ୍ଧ ହୋଇପଡୁଥିଲେ ବିଜୁବାବୁ । ତାଙ୍କୁ ଯେ କେହି ମହିଳା ତାଙ୍କ ମାଆ ଭଳି ଦିଶିଲେ, ସେ ନିଜକୁ ରୋକିପାରୁ ନ ଥିଲେ । ଠିକ୍ ତାଙ୍କ ମା'ଙ୍କ ପରି ଦିଶୁଥିଲେ ରେଭେନ୍‌ସା କଲେଜ ପଦାର୍ଥ ବିଜ୍ଞାନ ଅଧ୍ୟାପିକା ପ୍ରିୟତମା ଦେଓ । ବିଜୁବାବୁ ତାଙ୍କୁ ମା' ବୋଲି ଡାକନ୍ତି । ତାଙ୍କୁ ଦେଖିଲେ ଆଉଁସି ପକାନ୍ତି ।

ଜଣେ ମହିଳାଙ୍କ ପ୍ରତି ଏପରି ଦରଦ ଦେଖି, ହଠାତ କେହି ଜଣେ ପ୍ରଶ୍ନ କଲେ– ''ପ୍ରିୟତମା, ପେଟି ପ୍ରତି ଆପଣଙ୍କର ଏତେ ଭଲପାଇବା କାହିଁକି ?'' ବିଜୁବାବୁ କାନ୍ଦି ପକାଇଲେ । କହିଲେ– ''ତା' ଚେହେରା ଠିକ୍ ମୋ ମା' ଭଳି । ତାକୁ ଦେଖିଲେ ମୋ ମା' କଥା ଭାରି ମନେ ପଡ଼େ । ଖୁବ୍ କମ୍ ବୟସର ମା' ମୋତେ ଛାଡ଼ି ଚାଲିଗଲା । ହେଲେ ତା' ଭିତରେ ମୁଁ ମୋ ମା'କୁ ଦେଖୁଛି ।'' ମା'ଙ୍କ ସ୍ନେହକୁ ସାରାଜୀବନ ଝୁରୁଥିଲେ ବିଜୁବାବୁ । ଛୋଟ ଝିଅଟିଏ ଦେଖିଲେ ବି

ସେ ତାଙ୍କୁ ମା' ବୋଲି ଡାକୁଥିଲେ । ଭାଷଣ ଦେବାବେଳେ ମହିଳାମାନଙ୍କୁ ସର୍ବଦା ମା' ବୋଲି ସମ୍ବୋଧନ କରୁଥିଲେ । 'ଗାଁକୁ କାମ ମା'କୁ ସମ୍ମାନ' ସ୍ଲୋଗାନରେ ତାଙ୍କର ମା' ଶବ୍ଦଟି ପ୍ରତି ବ୍ୟାକୁଳତା ସହଜରେ ଅନୁମେୟ ।



# ତିନି ମହାରାଜାଙ୍କୁ ଦଣ୍ଡ

୧୯୫୦ ଦଶକର କଥା । ମୁଖ୍ୟମନ୍ତ୍ରୀ ଥା'ନ୍ତି ଡଃ ହରେକୃଷ୍ଣ ମହତାବ । ତାଙ୍କ ସରକାରଙ୍କୁ ଭାଙ୍ଗିବାପାଇଁ ସ୍ୱତନ୍ତ୍ର ଦଳ ପକ୍ଷରୁ ନାନା ମନ୍ତ୍ରଣାଯନ୍ତ୍ରଣା ଚାଲିଥାଏ । ଲୋକସଭା ସଦସ୍ୟ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓ ଯୋଜନାବଦ୍ଧ ଭାବେ ଖଡ଼ିଆଳ ରାଜା ତଥା ତତ୍କାଳୀନ ଉପମନ୍ତ୍ରୀ ଅନୁପ ସିଂହଦେଓଙ୍କୁ ପ୍ରଭାବିତ କରି ଲୁଚାଇ ରଖିଥିଲେ । ଏଭଳି ଜାଗାରେ ତାଙ୍କୁ ଲୁଚାଇ ରଖାଯାଇଥିଲା ଯେ, କେହି ବି ତାଙ୍କର ଖୋଜ ଖବର ପାଇନଥିଲେ । ପୋଲିସ ବି ଟେର ପାଉନଥିଲା । ମହତାବ ଏ ନେଇ ଖୁବ୍ ଚିନ୍ତିତ ଥିଲେ । ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ ନିଖୋଜ ହେବା ଘଟଣା ଚାରିଆଡ଼େ ଚର୍ଚ୍ଚା ହେଉଥାଏ । ବିଜୁବାବୁ କେଉଁଠୁ ଖବର ପାଇଲେ ଯେ, ଗାଙ୍ଗପୁର ରାଜା ତଥା ବିଧାୟକ ଉଦିତ ପ୍ରତାପ ଦେଓଙ୍କ ବାସଭବନରେ ସ୍ୱତନ୍ତ୍ର ଦଳର ଗୁପ୍ତ ବୈଠକ ବସୁଛି । ସେ ସିଧା ଚାଲିଲେ ଉଦିତ ପ୍ରତାପଙ୍କ ବାସଭବନକୁ । ସେଠାରେ ବି ଦିଗପହଣ୍ଡିର ବିଧାୟକ ମୋହନ ନାୟକ ଉପସ୍ଥିତ ଥିଲେ । ଅନ୍ୟାନ୍ୟ ବହୁ ସ୍ୱତନ୍ତ୍ରଦଳର ନେତାମାନେ ଏକାଠି ହୋଇଥିଲେ । ମୋହନବାବୁ ସେଠାରେ ବିଜୁବାବୁଙ୍କୁ ଦେଖି ପାଚେରୀ ଡେଇଁ ଛୁ କରିଥିଲେ । ଅନ୍ୟମାନେ ବିଜୁବାବୁଙ୍କୁ ବିରୋଧ କରିଥିଲେ । ମାତ୍ର ବିଜୁବାବୁ ସେସବୁକୁ ଖାତିର ନ କରି ମନ୍ତ୍ରୀ ଅନୁପ ସିଂହଦେଓଙ୍କୁ ଠାବ କରିବା ସହ ଘୋସାଡ଼ି ଆଣିବାକୁ ଚେଷ୍ଟା କରିଥିଲେ ।

ଏହି ସମୟରେ କଳାହାଣ୍ଡି ରାଜା ବିଜୁବାବୁଙ୍କୁ ବନ୍ଧୁକ ଦେଖାଇ ଡରାଇଥିଲେ । ଗାଙ୍ଗପୁର ରାଜାଙ୍କ ସମର୍ଥକମାନେ ମଧ୍ୟ ତାଙ୍କୁ ଠେଲାପେଲା କରି ଗଣ୍ଡଗୋଳ କରିଥିଲେ । ସେହି ଟଣାଟଣିବେଳେ ବିଜୁବାବୁଙ୍କ କାମିଜି ଚିରି ଯାଇଥିଲା । ବିଜୁବାବୁ ସେଠାରୁ ଫେରି ମହତାବଙ୍କୁ ଏହି ଖବର ଦେଇଥିଲେ । ଏହି ଘଟଣାରେ କଂଗ୍ରେସନେତାମାନେ ଖୁବ୍ ଉତ୍କ୍ଷିପ୍ତ ହୋଇପଡ଼ିଥିଲେ । ଏ ନେଇ ବିଧିବଦ୍ଧ ଭାବେ ଥାନାରେ ଏତଲା

ଦିଆଯାଇଥିଲା । ଗାଙ୍ଗପୁର ଓ କଳାହାଣ୍ଡି ରାଜାଙ୍କୁ ଗିରଫ କରାଯାଇ ଜେଲ୍ ପଠାଇ ଦିଆଗଲା । ଖଡ଼ିଆଳ ରାଜା ମନ୍ତ୍ରୀ ଥିବାରୁ ରାଜ୍ୟପାଳଙ୍କୁ ସୁପାରିଶ କରାଯାଇ ତାଙ୍କୁ ମନ୍ତ୍ରୀମଣ୍ଡଳରୁ ବହିଷ୍କାର କରାଯାଇଥିଲା । ସେଦିନ ବିଜୁବାବୁଙ୍କର ଏପରି ଦୁଃସାହସିକ ପଦକ୍ଷେପ ଯୋଗୁଁ ମହତାବଙ୍କ ମନ୍ତ୍ରୀମଣ୍ଡଳ ଭୁଷୁଡ଼ିଯିବା ଅବସ୍ଥାରୁ ବର୍ତ୍ତିଯାଇଥିଲା ।



# କହିଲ, ଜଣେ ଶ୍ରେଷ୍ଠ ଓଡ଼ିଆ ଯୁବକଙ୍କ ନାଁ ?

ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କିଛି ଓଡ଼ିଆ ପିଲା ଏକାଠି ହେଉଥା'ନ୍ତି । ଓଡ଼ିଶା ବାହାରେ ଓଡ଼ିଆଙ୍କୁ ଏକଜୁଟ କରିବାର ପ୍ରଚେଷ୍ଟା ଚାଲିଥାଏ । ଏହା ୧୯୫୨ ମସିହାର କଥା । ଓଡ଼ିଶାର ଜଣେ ପ୍ରଖ୍ୟାତ ବାଗ୍ମୀ ପ୍ରବକ୍ତା ପ୍ରଫେସର ହୃଦାନନ୍ଦ ରାୟ ସେତେବେଳେ ସେଠାର ଛାତ୍ର । ପ୍ରାୟ ଅଶୀ ଜଣ ଓଡ଼ିଆ ଛାତ୍ରଙ୍କ ଉଦ୍ୟମରେ ଏକ ସଭାର ଆୟୋଜନ କରାଯାଇଥାଏ । ଡଃ ହରେକୃଷ୍ଣ ମହତାବଙ୍କୁ ଏହି ସଭାକୁ ନିମନ୍ତ୍ରଣ କରାଯାଇଥାଏ । ଛାତ୍ରମାନଙ୍କର ଉଦ୍ଦେଶ୍ୟ ଥାଏ, ଓଡ଼ିଶା ବାହାରେ ଓଡ଼ିଆର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା । ମହତାବ ଭାଷଣ ଦେଉଥା'ନ୍ତି । ଛାତ୍ରମାନେ ମଧ୍ୟ ଖୁବ୍ ମନଯୋଗ ସହ ତାଙ୍କ ଭାଷଣ ଶୁଣୁଥା'ନ୍ତି । କଥା ପ୍ରସଙ୍ଗରେ ମହତାବ ପିଲାମାନଙ୍କ ଉଦ୍ଦେଶ୍ୟରେ ଏକ ପ୍ରଶ୍ନ କଲେ– ''ତୁମେ କହିପାରିବ, ଓଡ଼ିଶାର ବର୍ତ୍ତମାନ ସମୟର ଜଣେ ଶ୍ରେଷ୍ଠ ଯୁବକଙ୍କ ନାଁ ?'' ହଠାତ୍ ମହତାବଙ୍କ ମୁହଁରୁ ଏପରି ପ୍ରଶ୍ନ ଶୁଣି ଛାତ୍ରମାନେ ହଡ଼ବଡ଼େଇ ଗଲେ । ପରସ୍ପରର ମୁହଁକୁ ଚାହାଁଚାହିଁ ହେଲେ ।

'ଉତ୍କଳ ଭାରତୀ' ସଂସ୍ଥାର ସଂପାଦକ ଥା'ନ୍ତି ହୃଦାନନ୍ଦ ରାୟ । ସେ ମହତାବଙ୍କୁ କହିଲେ– ''ଆମେ ଭାବୁଛୁ, କେହି ବି ଆମେ କିଛି ଊଣା ନୋହୁଁ । ଆମେ ସମସ୍ତେ ନିଜେ ନିଜ ଗୁଣରେ ଶ୍ରେଷ୍ଠ ।'' ମହତାବ ହସିଲେ, କହିଲେ– ''ନାଇଁ, ନାଇଁ, ମୁଁ ଯାହା ପଚାରୁଛି ସେ ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ଦିଅ ।'' ଏଥର ହୃଦାନନ୍ଦ ରାୟ କହିଲେ– ''ଆମର ଉତ୍ତରରେ ଯଦି ଆପଣ ସନ୍ତୁଷ୍ଟ ନୁହଁନ୍ତି, ତାହାହେଲେ ଆପଣ କୁହନ୍ତୁ– କିଏ ସେହି ଶ୍ରେଷ୍ଠ ଓଡ଼ିଆ ଯୁବକ ?'' ଡଃ ମହତାବ କହିଲେ– ''ସେହି ନିର୍ଭିକ, ସ୍ୱାଭିମାନୀ ଦେଶପ୍ରେମୀ ଓଡ଼ିଆ ଯୁବକ ଜଣକ ହେଲେ– ବିଜୟାନନ୍ଦ ପଟ୍ଟନାୟକ ।'' ଏଇ ନାଁଟି ଶୁଣିବା ମାତ୍ରେ ଛାତ୍ରମାନେ ମଧ୍ୟରେ ଏକ ଭିନ୍ନ ବାତାବରଣ ସୃଷ୍ଟିହେଲା । କାହା କାହା ମୁହଁ ବି ମଉଳିଗଲା । ମହତାବ ପୁଣି କହିଲେ– ''ଯଦି ତୁମେ ଏଇ ଯୁବକଙ୍କୁ

ଜାଣି ନାହଁ, ତେବେ ଖୁବ୍ ଶିଘ୍ର ଜାଣିଯିବ । ସେ ହିଁ ତୁମର ଆଦର୍ଶ ହେବା ଉଚିତ ।''
ଏହା ପରଠାରୁ ହୃଦାନନ୍ଦ ରାୟ ପାଠପଢ଼ାସାରି ଓଡ଼ିଶା ଆସିବା ପରେ ଖୋଜି ଚାଲିଥିଲେ ବିଜୁ ପଟ୍ଟନାୟକ ଓ ତାଙ୍କ ବ୍ୟକ୍ତିତ୍ୱକୁ । ପରେ ବହୁ ସଭାମଞ୍ଚରେ ଉଭୟଙ୍କୁ ଦେଖିବାକୁ ମିଳିଥିଲା ।



# ଆମେ ତ ଏକା ଜାତିର ଲୋକ

ଏକଦା ରେଭେନ୍ସା କଲେଜର ଛାତ୍ର ଅସନ୍ତୋଷ ଦେଖାଦେଇଥାଏ । ପରିସ୍ଥିତି ଖୁବ୍ ଗଣ୍ଡଗୋଳିଆ ଥାଏ । ଛାତ୍ରଛାତ୍ରୀମାନେ ଗୁଣ୍ଡହୋଇ ବିଭିନ୍ନ ସ୍ଲୋଗାନ ଦେଉଥା'ନ୍ତି । ଏକଥା ଶୁଣି ବିଜୁବାବୁ ସେଠାରେ ପହଞ୍ଚିଗଲେ । ସେ ତ ଖୁବ୍ ଡେଙ୍ଗାଲୋକଟିଏ । ସେଠାରେ ଛାତ୍ରମାନେ ତାଙ୍କୁ ଘେରିପଟୁ ବେଢ଼ିଗଲେ । ସେମାନଙ୍କର ଦାବୀ ଓଗାଳି ପକାଇଥିଲେ । ବିଜୁବାବୁ ଡରିବା ଲୋକ ନୁହଁନ୍ତି । କହିଲେ– ''ଆରେ, ପିଲାଏ, ମୋତେ ଘେରାଉ କରିବାକୁ ତୁମର ଯଦି ସାହସ ଅଛି, ଘେର ଭିତରେ ରହିବାକୁ ମୋର ବି ସାହସ ଅଛି । କାରଣ ତୁମେମାନେ ମୋର ଶତ୍ରୁ ନୁହଁ । ଆମେ ପରା ଗୋଟାଏ ଜାତିର ଲୋକ । ତେଣୁ ଭୟ କରିବାର କ'ଣ ଅଛି ?'' ସେଦିନ ପିଲାଙ୍କ ସାହସିକତା ଦେଖି, ବିଜୁବାବୁ ତାଙ୍କ ହୃଦୟ ଜିଣିବାକୁ ଚେଷ୍ଟା କରିଥିଲେ । ଆଉ ସହଜରେ ତାଙ୍କ ଘେରରୁ ବାହାରିଥିଲେ ।

ଆଉ ଏକ ଘଟଣା । ବିଜୁବାବୁ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତି । ବାଣୀବିହାର ଆଇନ ମହାବିଦ୍ୟାଳୟର ବାର୍ଷିକ ଉତ୍ସବକୁ ତାଙ୍କୁ ନିମନ୍ତ୍ରଣ ଥାଏ । ସେଠାରେ ବିଜୁବାବୁ ପହଞ୍ଚିବାକ୍ଷଣି ଛାତ୍ରଛାତ୍ରୀମାନେ ତଥାକଥିତ ଢଙ୍ଗରେ ମୁଖ୍ୟମନ୍ତ୍ରୀଙ୍କ ନିକଟରେ କିଛି ଦାବି ରଖିଲେ । ଏହି ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଥା'ନ୍ତି ପରବର୍ତ୍ତୀ ସମୟର ପ୍ରଶାସନିକ ଅଧିକାରୀ ଦେବପ୍ରସାଦ ଦାଶ । ସେ ବି ସେଠାରେ ଛାତ୍ର ଥା'ନ୍ତି । ବିଜୁବାବୁ ଭାଷଣ ଦେବାକୁ ଉଠିଲେ । କହିଲେ– ''ନିକଟରେ ନିର୍ବାଚନ ପ୍ରଚାରରେ ମୁଁ ପଶ୍ଚିମ ଓଡ଼ିଶା ଯାଇଥିଲି । ବାଟରେ ଯାଉଥିବାବେଳେ ଗୋଟିଏ ଗାଈଚରାଳି ପିଲାକୁ ଦେଖିଲି । ତା'କୁ ଡାକି ପଚାରିଲି– ''ତୁ ପାଠ ନ ପଢ଼ି, ଗାଈ କାହିଁକି ଚରାଉଛୁ ?'' ସେ ବିନା ଦ୍ୱିଧାରେ କହିଲା– ''ନହେଲେ ପଇସା କୋଉଠୁ ଆସିବ ? ଗାଈ ଚରାଇ ପଇସା ଆଣୁଛି ବୋଲି ତ ଘର ଚଳୁଛି ।'' ବିଜୁବାବୁ ତାକୁ ପୁଣି ପଚାରିଲେ– ''ରାତିରେ ସ୍କୁଲ ଖୋଲିଲେ, ତୁ ପାଠ ପଢ଼ିବୁ ?'' ସେ କହିଲା–

‘‘ହଁ, କାହିଁକି ପଢ଼ିବିନି !’’ ତାହା ହେଲେ ତୁମେମାନେ କୁହ, ମୁଖ୍ୟମନ୍ତ୍ରୀ ଭାବେ ମୁଁ କାହାକୁ ଗୁରୁତ୍ୱ ଦେବି ? ମୋର ପ୍ରାଥମିକତା କ’ଣ ହେବ ? ସେଇ ଗାଈଚରାଳି ପିଲାପାଇଁ ରାତ୍ରିକାଳୀନ ସ୍କୁଲ ଖୋଲିବା, ନା ତୁମ ଗବେଷଣା ପାଇଁ ଟଙ୍କା ଦେବା ?’’ ସମାଜର ତଳ ଶ୍ରେଣୀ ପାଇଁ ଇଏ ଥିଲା ବିଜୁବାବୁଙ୍କର ଭବିଷ୍ୟତ ଚିନ୍ତା, ଯାହା ଅନ୍ୟମାନଙ୍କ ପାଇଁ ବୁଝିବା ଏତେ ସହଜ ହୋଇନପାରେ ।



# କୋଣାର୍କ ଗଢ଼ି ଶିବେଇ ସା'ନ୍ତରା କ'ଣ ପଇସା ଖାଇଗଲା ?

୧୯୭୪ ମସିହା ନିର୍ବାଚନ । ଝକିରି ଛାଡ଼ି ଏରସମାରୁ ନିର୍ବାଚନ ଲଢ଼ିଲେ ଡା. ଦାମୋଦର ରାଉତ । ବିଜୁବାବୁ ଉତ୍କଳ କଂଗ୍ରେସରୁ ତାଙ୍କୁ ସେଠାରେ ପ୍ରାର୍ଥୀ କରିଥିଲେ । ମାତ୍ର ପ୍ରଥମଥର ନିର୍ବାଚନ ଲଢ଼ି ଦାମବାବୁ ହାରିଗଲେ । ଗୋଟିଏ ପଟେ ଝକିରି ଗଲା, ଅନ୍ୟପଟେ ଲୋକପ୍ରତିନିଧି ହେବାର ଆଶା ବି ମଉଳିଗଲା । ସେ ଭୁବନେଶ୍ୱର ଆସି ବିଜୁବାବୁଙ୍କୁ ଦେଖାକଲେ । ମନରେ ଭୋଟରେ ହାରିଯିବାର ଦୁଃଖ । ପିଲାମାନେ ଚଳିବେ କେମିତି ? ସେମାନେ ପାଠପଢ଼ି ମଣିଷ ହେବେ କେମିତି ? ଏଇ କଥା ଭାବି ସେ ଅଫିସ୍ ପରଦା ଆଡ଼େଇ ଝହିଁଲେ । ବିଜୁବାବୁ ଗମ୍ଭୀର ହୋଇ ବସିଥା'ନ୍ତି । ଦାମବାବୁ ନମସ୍କାର କଲେ । ମୁହଁ ଟେକି ଝହିଁଲେ ବିଜୁବାବୁ, ମାତ୍ର କିଛି କହିଲେ ନାହିଁ । ଖୁବ୍ ସନ୍ତର୍ପଣରେ ତୃତୀୟ ଧାଡ଼ି ଚେୟାରରେ ବସିଲେ ଦାମବାବୁ । କିଛି ସମୟ ପରେ ବିଜୁବାବୁ କହିଲେ– "କାହିଁକି ମୁହଁ ଶୁଖେଇଛୁ, ହାରିଗଲୁ ବୋଲି ? ଝକିରି ଝଲିଗଲା ବୋଲି । ମୋର ଗୋଟେ ଶିଳ୍ପ ସାମ୍ରାଜ୍ୟ ତ ଥିଲା । ହଜାର ହଜାର କୋଟି ଟଙ୍କା କାରବାର କରୁଥିଲି । କିନ୍ତୁ ଦିନେ ଭାବିଲି– ମୁଁ କୋଟିପତି ହୋଇ ଲାଭ କ'ଣ ? ମୋ ରାଜ୍ୟର ଲୋକେ ତ ଦାରିଦ୍ର୍ୟ, ଅନାହାରରେ । କ୍ଷୁଧା, ବ୍ୟାଧି ଓ ନିରକ୍ଷରତା ଝରିଆଡ଼େ ବ୍ୟାପିଛି । ଏସବୁ ଚିନ୍ତାକରି ମୁଁ ସବୁ ଛାଡ଼ିଦେଇ ରାଜନୀତି କଲି । ଏମିତି ହେଲା ଯେ ମୁଁ ୧୯୭୧ରେ ପାଞ୍ଚଟା ଜାଗାରୁ ହାରିଲି । କ'ଣ ମୁଁ ରାଜନୀତି ଛାଡ଼ିଦେଲି ?" ସବୁ କିଛି ନିରବରେ ଶୁଣୁଥା'ନ୍ତି ଦାମବାବୁ । କିଛି ସମୟପରେ ବିଜୁବାବୁ ପୁଣି ପ୍ରଶ୍ନ କଲେ– "ଆରେ କୋଣାର୍କ ମନ୍ଦିର କିଏ ତିଆରି କରିଥିଲା ?"

ଦାମବାବୁ କହିଲେ– "ଲାଙ୍ଗୁଳା ନରସିଂହ ଦେବ ?"

– "ତାଙ୍କ ମନ୍ତ୍ରୀ କିଏ ଥିଲେ ?"

– ''ଶିବେଇ ସା'ନ୍ତରା ।''

– ''କେତେ ଟଙ୍କା ଖର୍ଚ୍ଚ ହୋଇଥିଲା ?''

– ''ହଁ, ତୃତୀୟ ଶ୍ରେଣୀରେ ପଢ଼ିଥିଲି ୧୨ ବର୍ଷର ରାଜସ୍ୱ ।''

ବିଜୁବାବୁ କହିଲେ– ''ହଁ, କୋଟିଏରୁ ଦୁଇକୋଟି ଟଙ୍କା ହୋଇଥିବ ?''

ପୁଣି ପ୍ରଶ୍ନ କଲେ– ''ଲୋକେ ତ କହିଥିବେ ଶିବେଇ ସାନ୍ତରା ପଇସା ଖାଇଗଲା ?''

– ''ଚୁପ୍ ରହିଲୁ କାହିଁକି ? କହୁନୁ ?''

ଆରେ ସେତେବେଳେ ରାଜତନ୍ତ୍ର ଥିଲା । ଲୋକେ ଘର ଭିତରେ ଫୁସୁରୁଫାସୁରୁ ହେଉଥିବେ ।

ଏବେ ପରା ଗଣତନ୍ତ୍ର । ଲୋକେ ରାସ୍ତାଘାଟରେ କଥା ହେଉଛନ୍ତି ?

ବାରକୋଟି ଟଙ୍କା ଋଣ କରି ପାରାଦୀପ ବନ୍ଦର କଲି ।

ଋଣ ଶୁଝି ନ ପାରିଲେ କିଏ ବନ୍ଦରକୁ ତାଡ଼ି ନେଇଯିବ ।

କିନ୍ତୁ କିଛି ଲୋକ କହୁଛନ୍ତି– ବିଜୁ ପଟ୍ଟନାୟକ କୋଟି କୋଟି ଟଙ୍କା ଖାଇଗଲା ?

ମନେରଖ, ତୋର ବିବେକ ଯଦି ସିଦ୍ଧ, ତୁ ଏପରି କୌଣସି କଥାକୁ ଖାତିର କରିବୁନି ।

ତୁ ଯା', ପାରାଦ୍ୱୀପର ଯତ୍ନ ନେ' । ଏବେ ମୋ କଥା କେହି ବୁଝିପାରୁ ନାହାଁନ୍ତି । ମୁଁ ମଲାପରେ ବୁଝିବେ । ଇଏ ଥିଲା ଦାମବାବୁଙ୍କ ଥରୁଟିଏ ଦେଖା ର ଅନେକ ଅଭୁଲା କଥା ।



# ବ୍ୟସ୍ତ ହୁଅନ୍ତୁନି, ମୁଁ ସେନାବାହିନୀକୁ ଠିକଣା ଜାଗାରେ ପହଞ୍ଚାଇବି

ଭାରତ-ପାକିସ୍ତାନ ବିଭାଜନ ପରେ ଜାମ୍ମୁ-କାଶ୍ମୀରକୁ ନେଇ ଉଭୟ ଦେଶ ମଧ୍ୟରେ ବିବାଦ ଘନେଇଲା । ଏହା ଭାରତ କିମ୍ବା ପାକିସ୍ତାନରେ ମିଶିବ– ତାହା ନିର୍ଭର କରୁଥିଲା ସେଠାର ରାଜା ହରି ସିଂହଙ୍କ ମତ ଉପରେ । ରାଜା ହରିସିଂହ ଚାହୁଁଥା'ନ୍ତି ଜାମ୍ମୁ କାଶ୍ମୀରକୁ ଭାରତ ସହ ମିଶାଇବାକୁ । ଅନ୍ୟପଟେ ପାକିସ୍ତାନ କିନ୍ତୁ କାଶ୍ମୀରକୁ ନିଜ ଅଧିକାରକୁ ନେବାପାଇଁ ନାନା ଅରାଜକତା ସୃଷ୍ଟି କରୁଥାଏ । ସେନାବଳରେ ତିକ୍ତତା ବଢ଼ାଉଥାଏ । ଏହି ସମୟରେ ହରି ସିଂହ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ସାମରିକ ସହାୟତା ଲୋଡ଼ିଲେ । ଏହି ସହାୟତା ପୂର୍ବରୁ କାଶ୍ମୀରକୁ ଭାରତରେ ମିଶାଇବା ପାଇଁ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ସେପଟେ ପାକିସ୍ତାନ ସେନା ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଥାଏ । ଭାରତୀୟ ସେନା ସେଠାରେ ପହଞ୍ଚି କିପରି ପାକିସ୍ତାନ ସେନାର ମୁକାବିଲା କରିବ, ସେ ନେଇ ସରକାରଙ୍କ ଚିନ୍ତା ବଢ଼ିଗଲା । ସ୍ଥଳପଥରେ ସେଠାରେ ପହଞ୍ଚିବା ମୁସ୍କିଲ୍ ଥିଲା । ତେଣୁ ଏକମାତ୍ର ବିକଳ୍ପ ଆକାଶପଥ । ମାତ୍ର ସେଠାରେ ଛୋଟ ବିମାନ ଅବତରଣ ପାଇଁ ଏୟାରଷ୍ଟ୍ରିପ୍ ଥାଏ । ସେନାବାହିନୀକୁ ନେଇ ବଡ଼ଧରଣର ବିମାନ ଯିବା ସମ୍ଭବ ନୁହେଁ । ଏଥିପାଇଁ କେହି ବି ପାଇଲଟ୍ ରାଜି ହେଲେନି । ନେହେରୁଙ୍କ ଚିନ୍ତା ବଢ଼ିଗଲା । ସେ ବ୍ୟସ୍ତ ହୋଇପଡ଼ିଲେ ।

ମାତ୍ର ବିଜୁବାବୁ ଦମ୍ଭର ସହ କହିଲେ– "ଆପଣ ଆଦୌ ଚିନ୍ତା କରନ୍ତୁନି । କେହି ନ ଗଲେ ନାହିଁ, ସେନାବାହିନୀକୁ ନେଇ ମୁଁ ନିଜେ ଯିବି ।" ବିଜୁବାବୁଙ୍କ ଉପରେ ନେହେରୁ ଓ ତତ୍କାଳୀନ ବୈଦେଶିକ ମନ୍ତ୍ରୀ ଭି.କେ. କୃଷ୍ଣମେନନଙ୍କର ଅଖଣ୍ଡ ବିଶ୍ୱାସ ଥାଏ । ବିଜୁବାବୁ ସେନାବାହିନୀକୁ ଧରି କାଶ୍ମୀର ଅଭିମୁଖେ ଉଡ଼ାଣ କଲେ । ଛୋଟ ଏୟାରଷ୍ଟ୍ରିପ୍ ହେଲେ ମଧ୍ୟ ଦକ୍ଷ ପାଇଲଟ୍ ବିଜୁବାବୁ ଖୁବ୍ ସତର୍କତା ଓ ନିର୍ଭିକତାର ସହ ସେନାବାହିନୀକୁ ଅବତରଣ କରାଇଥିଲେ । ଫଳରେ ଭାରତୀୟ

ସେନା ଠିକ୍ ସମୟରେ ପାକିସ୍ତାନ ସେନାର ମୁକାବିଲା କରି ତାଙ୍କୁ ପ୍ରତିହତ କରିଥିଲେ । ଏହି ପରିସ୍ଥିତିରେ ଭାରତର ବିଜୟ ଓ କାଶ୍ମୀର ମିଶ୍ରଣ ଥିଲା ଦେଶ ପାଇଁ ସବୁଠୁ ବଡ଼ ଚ୍ୟାଲେଞ୍ଜ ଓ ସଫଳତା । ଏହି ଇତିହାସ ସହିତ ଯୋଡ଼ି ହୋଇ ରହିଛି ବିଜୁଙ୍କ ଅପୂର୍ବ ସାହସିକତାର ନିଦର୍ଶନ ।



# ସୈନ୍ୟମାନେ ଉପାସରେ ଲଢ଼ିବେ, ଆମେ କ'ଣ ଘରେ ଶୋଇବୁ !

ଭାରତ-ଚୀନ ଯୁଦ୍ଧ ସମୟର ଘଟଣା । ଦେଶର ସୁରକ୍ଷା ପାଇଁ ପ୍ରାଣମୂର୍ଚ୍ଛା ଲଢୁଥା'ନ୍ତି ଭାରତୀୟ ସେନା । ଚୀନର ତଳଫା ଅଞ୍ଚଳରେ ପଡ଼ିଥିଲା ଭାରତୀୟ ସେନା ଛାଉଣୀ । ସୈନ୍ୟମାନେ ଜୀବନକୁ ପାଣିଛଡ଼େଇ ଶତ୍ରୁପକ୍ଷର ମୁକାବିଲା କରୁଥା'ନ୍ତି । ହଠାତ୍ ପାଣିପାଗ ବଦଳିଗଲା । ଆକାଶ ମାର୍ଗରୁ ଉଡ଼ାଜାହାଜଦ୍ୱାରା ସୈନ୍ୟମାନଙ୍କ ପାଇଁ ଖାଦ୍ୟ ପଠାଇବା ସମ୍ଭବ ହେଲାନି । କ'ଣ କରାଯିବ ? ସମସ୍ତଙ୍କ ଭିତରେ ଭାଳେଣୀ ପଡ଼ିଗଲା । ଖାଦ୍ୟ ଜିନିଷ ନ ପଠାଇଲେ, ସେମାନେ ଉପବାସରେ ରହିଯିବେ । ପ୍ରଧାନମନ୍ତ୍ରୀ ନେହେରୁ ଓ ପ୍ରତିରକ୍ଷାମନ୍ତ୍ରୀ କୃଷ୍ଣମେନନ୍ ଚିନ୍ତିତ ହୋଇପଡୁଥା'ନ୍ତି । ନେହେରୁ ବିଜୁବାବୁଙ୍କୁ ଡକାଇଲେ । ପଚାରିଲେ– ''ଏଭଳି ପରିସ୍ଥିତିରେ କ'ଣ କରାଯିବ ?'' ବିଜୁବାବୁ କେବେ ପଛଘୁଞ୍ଚା ଦେବା ଲୋକ ନୁହଁନ୍ତି । ନେହେରୁଙ୍କୁ ସେ ପାଲଟା କହିଲେ– ''ଆମ ସୈନ୍ୟମାନେ ଦେଶପାଇଁ ଯୁଦ୍ଧ କରି ଅନାହାରରେ ମରିବେ, ଆମେ ଏଠି ପ୍ରାଣ ଭୟରେ ଘରେ ଶୋଇବୁ ! ଏହା କେମିତି ସମ୍ଭବ ? ଏମିତି ହୋଇପାରିବନି । ମୁଁ ନିଜେ ସୈନ୍ୟମାନଙ୍କ ପାଇଁ ଖାଦ୍ୟ ନେଇ ଯିବି ।'' ବିଜୁବାବୁଙ୍କ କଥାରେ ଆଶ୍ୱସ୍ତ ହେଲେ ପ୍ରଧାନମନ୍ତ୍ରୀ । ଏଥର ସୀମାରେ ଥିବା ସେନାଙ୍କ ପାଇଁ ଖାଦ୍ୟସାମଗ୍ରୀ ଧରି ବାହାରିଲେ ବିଜୁବାବୁ । ପାଗ ପ୍ରତିକୂଳ ଥିଲା । ମାତ୍ର ଦୁର୍ଦ୍ଧର୍ଷ ବିଜୁ ନିଜ ଜୀବନକୁ ବିପନ୍ନ କରି ଖାଦ୍ୟ ସାମଗ୍ରୀ ଧରି ଉଡ଼ିଯାଇଥିଲେ ସୀମାନ୍ତକୁ । ଯେଉଁଠି ଯୁଦ୍ଧର ଘନଘଟାରେ ପ୍ରତିଟି ମୁହୂର୍ତ୍ତ ସଙ୍ଗୀନ ହୋଇ ଉଠୁଥାଏ, ତୋପ, କମାଣ, ଗୁଳିର ଆବାଜ କାନଅତଡ଼ା ପକାଉଥାଏ, ସେଇ ବିପଦପୂର୍ଣ୍ଣ ପରିସ୍ଥିତିରେ ବିଜୁବାବୁ ଛୁଟିଯାଇଥିଲେ ସୀମାନ୍ତ ବୀରମାନଙ୍କ ପାଖକୁ । ସେମାନଙ୍କ ନିକଟରେ ପହଞ୍ଚାଇଥିଲେ ଖାଦ୍ୟସାମଗ୍ରୀ । ବିଜୁବାବୁଙ୍କ ଏପରି ଦୁଃସାହସ ଦେଖି ସେଦିନ ଭାରତୀୟ ସୈନ୍ୟମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେ ଯେଉଁ ବୀରତ୍ୱର ପରିଚୟ ଦେଇଥିଲେ, ତାହା ତାଙ୍କ ସଚ୍ଚା ଦେଶପ୍ରେମର ପରିଚାୟକ ।



# ବିଜୁ ବିମାନ ଚଳେଇଲେ ବିପଦ ବି ଡରିଯାଏ

ପ୍ରଥମ ସାଧାରଣ ନିର୍ବାଚନ ସମୟ କଥା । ବିଜୁବାବୁ କଂଗ୍ରେସ ପ୍ରାର୍ଥୀଭାବେ ଜଗନ୍ନାଥ ପ୍ରସାଦରୁ ଲଢୁଥା'ନ୍ତି । ଏକଦା ବିଜୁବାବୁ ଓ ପ୍ରଜାତନ୍ତ୍ରର କେଶବ ସାମଲ ନିର୍ବାଚନ ମଣ୍ଡଳି ଯିବାର ଥାଏ । କାମ ହେଲା ବିଜୁବାବୁ ଭାଷଣ ଦେବେ, ଆଉ ସେହି ଖବରକୁ କେଶବବାବୁ 'ପ୍ରଜାତନ୍ତ୍ର'ରେ ଆଣି ଛାପିବେ । ଦୁଇଜଣ ଯାକ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିଲେ । ସେଠାରୁ ଦି' ଟିକିଆ ସିଟ୍ ଥିବା ବିମାନଟି କାଢ଼ି ଆଣିଲେ । ଉଡ଼ାଣ ପୂର୍ବରୁ ଇଂଜିନିୟର ପରଖି ନେଲେ ବିମାନସାରା । ଆଗପଟ ପଙ୍ଖାକୁ ଦେଖି କହିଲେ– ''ଏଥିରେ ଫାଟ ସବୁ ଅଛି, ତେଣୁ ବିମାନ ଚଳନାବେଳେ ବିପଦ ଅଛି ।'' ବିଜୁବାବୁ ତାଙ୍କୁ ପାଲଟା ବିଗିଡ଼ି କହିଲେ– ''ଯାଅ, କିଛି ଜାଣିନ ତୁମେ, ଗୋଟାଏ ବୋଗସ୍ ଇଞ୍ଜିନିୟର ।'' ପୁଣି ଇଞ୍ଜିନିୟର ଜଣକ କହିଲେ– ''ଏଥିରେ ଅନେକ ମିଟର କାମ କରୁନି । ତା'ଛଡ଼ା ଆପଣଙ୍କ ହାତରେ ତ ଘଣ୍ଟା ନାହିଁ । ବିମାନ ନେବେ କେମିତି ?'' ବିଜୁବାବୁ ଭୀଷଣ ରାଗିଗଲେ । ଇଞ୍ଜିନିୟରଙ୍କ ହାତରୁ ଘଣ୍ଟାଟି ଛଡ଼ାଇ ଆଣି ପିନ୍ଧିବା ସହ କହିଲେ– ''ଦେଖ, ଆମେ କେମିତି ପ୍ରଚାର କାମ ସାରି ଫେରୁଛୁ ।''

ଅନ୍ୟପଟେ ଇଞ୍ଜିନିୟରମାନଙ୍କର ଏପରି କଥାଶୁଣି କେଶବବାବୁ ଛାନିଆଁ ହୋଇଯାଇଥା'ନ୍ତି । ସେ ଡରରେ ବିମାନରୁ ଓହ୍ଲାଇପଡ଼ି, ଟ୍ରେନରେ ଯିବାର ନିଷ୍ପତ୍ତି ନେଇ ସାରିଥିଲେ । ବିଜୁବାବୁ ତାଙ୍କର ଏତେ ବଡ଼ ପାହୁଣ୍ଡ ପକାଇ କେଶବବାବୁଙ୍କ ପାଖକୁ ମାଡ଼ି ଆସି ତାଙ୍କ ସାର୍ଟ କଲର ଧରି ପକେଇ କହିଲେ– ''ନନ୍‌ସେନ୍ସ, କୁଆଡ଼େ ପଳାଉଛୁ ? ଏତେ ଡରିଲେ ହେବ ! ବିଜୁ ପଟ୍ଟନାୟକ ବିମାନ ଚଳେଇଲେ ବିପଦ ବି ଡରି ପଳାଏ । ମନେରଖ, ତୁ ଆଉ କାହା ସହ ନୁହେଁ, ବିଜୁ ପଟ୍ଟନାୟକ ସହ ଯାଉଛୁ ।'' ବିଜୁବାବୁଙ୍କ ନାଲିଆଖିରେ କେଶବ ବାବୁ ବିମାନରେ ବସିଲେ । ଭୟରେ ତାଙ୍କର ମୁହଁ ଶୁଖି କଳାକାଠ ପଡ଼ିଯାଉଥାଏ । ବିଜୁବାବୁ ତାଙ୍କ ମୁହଁକୁ

ଲକ୍ଷ୍ୟକରି ମନକୁ ଟିକେ ହାଲ୍‌କା କରିବା ପାଇଁ କହିଲେ– ''କେଶବ ! ଜଙ୍ଗଲରେ ବାଘ ଦେଖିବୁ ।'' ଦି'ଥରିଥର ବିମାନଟିକୁ ତଳକୁ ଖସାଇ ବୁଲାଇ ଆଣିଲେ ବାଘସବୁ ବାହାରିବେ । ବିଜୁବାବୁ ତାହା କଲେ । ମାତ୍ର ବାଘ ବାହାରିଲେନି । ବିଜୁବାବୁ କହିଲେ– ''ଆରେ ! ତୋ ଭାଗ୍ୟ ଖରାପ, ନ ହେଲେ ତୁ ଆଜି ବାଘ ଦେଖିଥା'ନ୍ତୁ ।'' ସେମାନେ ଭଞ୍ଜନଗରରେ ଓହ୍ଲାଇବାର ଥାଏ । ତେଣୁ ବିଜୁବାବୁ ଯେଉଁ କ୍ଷେତରେ ଓହ୍ଲାଇବାର ଥାଏ, ତା'ର ହିଡ଼ ହାଣି ସଫା କରିଦେବାକୁ ପ୍ରଶାସନକୁ କହିଦେଇଥା'ନ୍ତି । ମାତ୍ର କର୍ମୀ ଓ ଅଧିକାରୀମାନେ ଏହା କରିନଥିଲେ । ତେଣୁ ବିମାନଟି ଓହ୍ଲାଇବାବେଳେ ଏକ ହିଡ଼ରେ ମାଡ଼ ହୋଇ ଉପରକୁ ଉଠିଗଲା । ମାତ୍ର ବିଜୁବାବୁ କୌଶଳରେ ବିମାନଟିକୁ ଆଉଟିକେ ତଳକୁ ନେଇଯାଇ ପୁଣି ଥରେ ନିରାପଦରେ ଅବତରଣ କଲେ । ବିମାନରୁ ଓହ୍ଲାଇବାପରେ କେଶବବାବୁଙ୍କ ଦେହରେ ଜୀବନ ପଶିଲା । ସେ ଆଶ୍ୱସ୍ତ ହେଲେ ।



# ଅଧାବାଟରୁ ଫେରିଲା ବୁଡ଼ାଜାହାଜ

୧୯୭୧ ମସିହା । ଭାରତ-ପାକିସ୍ତାନ ଯୁଦ୍ଧର ସମୟ । ଘମାଘୋଟ ଲଢ଼େଇ ଚାଲିଥାଏ । ଭାରତ ବିରୋଧରେ ପାକିସ୍ତାନ ନାନା ଫନ୍ଦିଫିକର କରୁଥାଏ । ଏହି ସମୟରେ ଇଣ୍ଡୋନେସିଆ ପାକିସ୍ତାନକୁ ବୁଡ଼ାଜାହାଜ ଯୋଗାଉଛି-ବୋଲି ଜଣାଗଲା । ପ୍ରଧାନମନ୍ତ୍ରୀ ନେହେରୁ ଚିନ୍ତାରେ ପଡ଼ିଗଲେ । ବିଜୁବାବୁଙ୍କୁ ଡାକି କହିଲେ– ''ତୁମର ତ ସୁକର୍ଣ୍ଣଙ୍କ ସହ ସଂପର୍କ ଭଲ । ଯାଅ, ପଚାର ସେ ଏପରି ନିଷ୍ପତ୍ତି କାହିଁକି ନେଲେ ? ଯେତେ ଶୀଘ୍ର ପାର ନିଷ୍ପତ୍ତି ବଦଳାଇବାକୁ ତାଙ୍କୁ କୁହ ।'' ବିଜୁବାବୁ ଛୁଟିଲେ ଇଣ୍ଡୋନେସିଆ । ଦେଖାକଲେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ । ପଚାରିଲେ– ''ଆପଣ ଏପରି ନିଷ୍ପତ୍ତି କାହିଁକି ନେଲେ ? ଭାରତ ଆପଣଙ୍କର ବନ୍ଧୁରାଷ୍ଟ୍ର । ଅଥଚ ଆମ ବିରୋଧରେ ଯାଇ ଆପଣ ଶତ୍ରୁକୁ ସାହାଯ୍ୟ କରୁଛନ୍ତି କାହିଁକି ?'' ସୁକର୍ଣ୍ଣ ବିଜୁବାବୁଙ୍କ ପ୍ରଶ୍ନବାଣରେ ଇତସ୍ତତଃ ହୋଇଗଲେ । ନିଜ ଅସମୟର ବନ୍ଧୁଙ୍କୁ କିଭଳି ବୁଝାଇବେ ନିଜେ ବୁଝିପାରୁ ନ ଥିଲେ । କେବଳ ଏତିକି କହିଲେ ଯେ, ''ଆମେ ପାକିସ୍ତାନକୁ କେତେଟା ବୁଡ଼ାଜାହାଜ ଦେଇଦେଲେ କ'ଣ ଭାରତ ହାରିଯିବ ! ଆପଣ ଏପରି ବିଚଳିତ ହୋଇପଡୁଛନ୍ତି କାହିଁକି ?'' ବିଜୁବାବୁ ପାଲଟା ଜବାବ ଦେଲେ– ''ଆପଣ କ'ଣ ଭାବୁଛନ୍ତି, ଭାରତ ହାରିଯା'ନ୍ତା ବୋଲି ? ତାହା ତ ପ୍ରଶ୍ନ ଉଠୁନି, କିନ୍ତୁ ଆପଣ ଭୁଲ୍ କରୁଛନ୍ତି । ବନ୍ଧୁତାରେ ଫାଟ ସୃଷ୍ଟି କରୁଛନ୍ତି ।'' ସୁକର୍ଣ୍ଣ ପୁଣି ଯୁକ୍ତି କଲେ, ''ଏକ ମୁସଲମାନ ଦେଶ ଭାବେ ଆଉ ଏକ ମୁସଲମାନ ଦେଶ ତା'କୁ ସାହାଯ୍ୟ କରୁଛି । ଏହା ତ ଆମର ଧର୍ମ !'' ବିଜୁବାବୁ ଛାଡ଼ିବା ଲୋକ ନୁହଁନ୍ତି । କହିଲେ– ''ଭାରତରେ କ'ଣ ମୁସଲମାନ ନାହାଁନ୍ତି । ମୁଁ ତ ଗୋଟେ ହିନ୍ଦୁରାଷ୍ଟ୍ରର ଲୋକ । ଆପଣଙ୍କୁ ଯେତେବେଳେ ସାହାଯ୍ୟ କରିବାକୁ ଜୀବନକୁ ବାଜି ଲଗେଇ ଇଣ୍ଡୋନେସିଆ ଯାଇଥିଲି, ସେତେବେଳେ ଆପଣ ତ କହିପାରିଥା'ନ୍ତେ ଯେ, ଆମେ ଗୋଟେ ହିନ୍ଦୁ ରାଷ୍ଟ୍ରଠାରୁ ସାହାଯ୍ୟ ଗ୍ରହଣ କରିବୁନି । କାଇଁ, ସେ କଥା ତ ସେତେବେଳେ କହି ନ ଥିଲେ । ଏବେ ସେ ପ୍ରଶ୍ନ ଉଠୁଛି

କାହିଁକି ?'' ''ଆମର ପାନ୍ ବୁଡ଼ାଜାହାଜ ତ ପାକିସ୍ତାନ ଅଭିମୁଖେ ବାହାରି ସାରିଛି । ପଠାଯିବା ପୂର୍ବରୁ ଆଲୋଚନା ହୋଇଥିଲେ ଭଲ ହୋଇଥା'ନ୍ତା ।'' ବିଜୁବାବୁ କହିଲେ– ''ଠିକ୍ ଅଛି । ବୁଡ଼ାଜାହାଜ ପଠାଯାଇଛି, କିନ୍ତୁ ଏହା ତ ପାକିସ୍ତାନରେ ପହଞ୍ଚିନି । ଯେଉଁ ପର୍ଯ୍ୟନ୍ତ ଯାଇଛି, ସେଇଠୁ ଫେରାଇ ଆଣନ୍ତୁ । ମୁଁ ଏପରି ସ୍ଥଳେ କିଛି ବି ସାଲିସ, କରିବାକୁ ଚାହେଁନା ।'' ବିଜୁବାବୁଙ୍କର ଏ କଥା ରଖିଲେ ସୁକର୍ଣ୍ଣ । ଇଣ୍ଡୋନେସିଆ ପଠାଇଥିବା ବୁଡ଼ାଜାହାଜ ସୁକର୍ଣ୍ଣଙ୍କ ନିର୍ଦ୍ଦେଶରେ ଅଧାବାଟରୁ ଫେରିଆସିଲା । ଅନ୍ୟ ରାଷ୍ଟ୍ରର ସେନା ଉପରେ ସେଦିନ ବିଜୁ ନିଜର ଲଗାମ ଲଗେଇ ଏକ ଆସନ୍ନ ବିପଦରୁ ଦେଶର ସୁରକ୍ଷା ପାଇଁ ଲଢ଼େଇ କରିଥିଲେ ।



# ୧ରେ କେତୋଟି ଶୂନ ଦେଲେ କୋଟିଏ ହେବ ?

୧୯୬୧ରୁ ୧୯୬୭ ପର୍ଯ୍ୟନ୍ତ ଯେଉଁମାନେ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀ ଥିଲେ ସେମାନଙ୍କ ବିରୋଧରେ ହୋଇଥିବା ଦୁର୍ନୀତି ଅଭିଯୋଗର ତଦନ୍ତ ପାଇଁ ଏକ କମିଶନ ନିଯୁକ୍ତି ପାଇଥା'ନ୍ତି । ଦିଲ୍ଲୀ ହାଇକୋର୍ଟର ବିଚାରପତି ଏଚ୍.ଆର. ଖାନ୍ନା ଏ ନେଇ ଜଣିକିଆ କମିଶନ ଭାବେ ନିଯୁକ୍ତି ପାଇଥା'ନ୍ତି । ଏହି ଖାନ୍ନା କମିଶନ ବସାଇବା ପଛରେ ହାତ ଥାଏ ଡଃ ହରେକୃଷ୍ଣ ମହତାବଙ୍କର । ତାଙ୍କ ନେତୃତ୍ୱରେ ଗଠିତ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାରଙ୍କର ଏହା ଥିଲା ପ୍ରତିଶୋଧମୂଳକ ଚାଲ୍ । ଭୁବନେଶ୍ୱର ଷ୍ଟେଟ୍ ଲାଇବ୍ରେରୀ ହଲ୍‌ରେ ଏହି କମିଶନର କାର୍ଯ୍ୟ ଚାଲୁଥିଲା । ରାଜ୍ୟ ସରକାରଙ୍କ ପକ୍ଷରୁ ଆଡ୍‌ଭୋକେଟ ଜେନେରାଲ ଅଶୋକ ଦାସ ତତ୍‌କାଳୀନ ସମୟର ଅଭିଯୋଗ ଥିବା ନେତାମାନଙ୍କ ବିରୋଧରେ ସତୁରୀଟି ଅଭିଯୋଗ ଆଣିଥିଲେ । ଆଡ୍‌ଭୋକେଟ ଜେନେରାଲଙ୍କୁ ସାହାଯ୍ୟ କରିବାପାଇଁ ପ୍ରାୟ ପନ୍ଦର କୋଡ଼ିଏ ଜଣ ଓକିଲ୍ ନିଯୁକ୍ତ ହୋଇଥା'ନ୍ତି । ଅଭିଯୋଗ ଥିବା ନେତାଙ୍କ ପକ୍ଷରୁ ଓକିଲମାନେ ପ୍ରାରମ୍ଭିକ ଜବାବ ଦାଖଲ କରିସାରିବା ପରେ, ନିଷ୍ପତ୍ତି ନିଆଗଲା ଯେ– ବିପକ୍ଷମାନଙ୍କ ନେତା ବିଜୁ ପଟ୍ଟନାୟକ କମିଶନ ଆଗରେ ଉପସ୍ଥିତ ହୋଇ ତାଙ୍କର ନିଜସ୍ୱ ମତ ରଖିବେ । ତାହା ହିଁ ହେଲା । ବିଜୁବାବୁ ନିର୍ଦ୍ଦିଷ୍ଟ ଦିନ କମିଶନ ଆଗରେ ହାଜର ହେଲେ । ତାଙ୍କ ବିରୋଧରେ ହୋଇଥିବା ଅଭିସନ୍ଧିମୂଳକ, ଭିତ୍ତିହୀନ ଅଭିଯୋଗର ପ୍ରତିବାଦ କଲେ । ସରକାରଙ୍କ ପକ୍ଷରୁ ଆଡ୍‌ଭୋକେଟ ଜେନେରାଲ ଉପସ୍ଥିତ ଥା'ନ୍ତି । କଥା ପ୍ରସଙ୍ଗରେ ବିଜୁବାବୁ କହିଲେ ଯେ– ''ବିଜୁ ପଟ୍ଟନାୟକ କୋଟିକୋଟି ଟଙ୍କା ଖାଇଯାଇଛି ବୋଲି ଅଭିଯୋଗ ହୋଇଛି । ତେବେ ଆଡ୍‌ଭୋକେଟ ଜେନେରାଲ କହିବେ କି, ଏକରେ କେତୋଟି ଶୂନ ଦେଲେ କୋଟିଏ ହେବ ?'' କିଛି ସମୟ ନୀରବ ରହି ଉତ୍ତରକୁ ଅପେକ୍ଷା କଲେ । ମାତ୍ର ଆଡ୍‌ଭୋକେଟ ଜେନେରାଲଙ୍କ ପକ୍ଷରୁ କିଛି ଉତ୍ତର ଆସିଲାନି । ବିଜୁ ପଟ୍ଟନାୟକ ପୁଣି ଇଂରାଜୀରେ ତାଙ୍କର ଭାଷଣ ଜାରି ରଖିଲେ ।

ପାରମ୍ପରିକତା ଛାଡ଼ି ପ୍ରଗତିଶୀଳ ଚିନ୍ତାକଲେ ସେ କିପରି କାର୍ଯ୍ୟକରନ୍ତି, ତାହା ତାଙ୍କ ଓଜସ୍ୱିନୀ ଭାଷଣରେ ଶୁଣିବାକୁ ମିଳିଥିଲା । କମିଶନ ଏହି ଭାଷଣ ମନ୍ତ୍ରମୁଗ୍ଧ ଭଳି ଶୁଣୁଥିଲେ । ଶେଷରେ କମିଶନ ଯେତେବେଳେ ରିପୋର୍ଟ ଦେଲେ, ସେତେବେଳେ ସେ ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱକୁ ଭୁରିଭୁରି ପ୍ରଶଂସା କରିଥିଲେ ।



# ମୋର ଏଇଭଳି ଅଫିସର ଦରକାର

ଏକଦା ଆନ୍ଧ୍ର-ଓଡ଼ିଶା ସୀମାନ୍ତରେ ଦୂଷିତ ପାଣି ପିଇ ବହୁଲୋକ ମୃତ୍ୟୁମୁଖରେ ପଡ଼ିଥିଲେ । ଲୋକଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଏପରି ବିଗିଡ଼ି ଯାଇଥିଲା ଯେ, ପରିସ୍ଥିତି ଅସମ୍ଭାଳ ହୋଇପଡ଼ିଥିଲା । ଲୋକେ ସରକାରଙ୍କ ସ୍ୱାସ୍ଥ୍ୟସେବା ପ୍ରତି ଅଙ୍ଗୁଳି ଉଠାଉଥିଲେ । ସେତେବେଳେ ସାଧାରଣ ପ୍ରଶାସନ ବିଭାଗ ଦାୟିତ୍ୱରେ ଥା'ନ୍ତି ବରିଷ୍ଠ ପ୍ରଶାସିକା ଚନ୍ଦ୍ରମଣି ନାରାୟଣ ସ୍ୱାମୀ । ସେତେବେଳେ ଅନେକ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ତାଙ୍କୁ ବୁଝିବାକୁ ପଡୁଥାଏ । ସୀମାନ୍ତ ଗ୍ରାମଗୁଡ଼ିକରେ କିପରି ଲୋକଙ୍କୁ ଶିଝାପାଣି ବଣ୍ଟାଯିବ, ତା'ର ବ୍ୟବସ୍ଥା କରିବାକୁ ପଡ଼ିବ । ତେଣୁ ସେ ବିଭିନ୍ନ ଅଞ୍ଚଳ ବୁଲି ଲୋକଙ୍କ ସମସ୍ୟା ଓ ସେମାନେ କିପରି ସ୍ୱାସ୍ଥ୍ୟ ସଚେତନ ହୋଇପାରିବେ ସେ ବିଷୟରେ ତଦାରଖ କରୁଥିଲେ । ଚନ୍ଦ୍ରମଣିଙ୍କ ଏହି ଗସ୍ତକାଳରେ ଆଉ ଗୋଟିଏ କଥା ଦେଖିବାକୁ ମିଳିଥିଲା ଯେ, ଅନେକ ଗାଁ ଦେଇ ଦୂଷିତ ପାଣି ଆସୁଛି । ଯଦିଓ ସେସବୁ ଗାଁରେ କେହି ଆକ୍ରାନ୍ତ ହୋଇନାହାନ୍ତି । ଭବିଷ୍ୟତରେ ଏହି ଗାଁଗୁଡ଼ିକରେ ମଧ୍ୟ ଲୋକଙ୍କ ମୃତ୍ୟୁ ଘଟିବାର ଆଶଙ୍କା ଅଛି । ତେଣୁ ଚନ୍ଦ୍ରମଣି କୌଣସି ଯୋଜନା ନ ଥାଇ ମଧ୍ୟ ନିଷ୍ପତ୍ତି ନେଲେ ଯେ, ଏସବୁ ଗାଁଗୁଡ଼ିକରେ ବି ଶିଝାପାଣି ବଣ୍ଟନ କରାଯିବା ଦରକାର । ତାହା କାର୍ଯ୍ୟକାରୀ ହେଲା । ଆସନ୍ନ ମୃତ୍ୟୁରୁ ବର୍ତ୍ତିଲେ ବହୁଲୋକ । ଏ ସଂପର୍କିତ ରିପୋର୍ଟ ଦେଖି ସେ ସମୟରେ ବିଜୁବାବୁ ଖୁବ୍ ଖୁସି ହୋଇଯାଇଥିଲେ । ଆଉ ଚନ୍ଦ୍ରମଣିଙ୍କୁ ସାବାସି ଦେଇ କହିଥିଲେ- ''ମୋର ଏଇଭଳି ଅଫିସର ଦରକାର । ଯେଉଁମାନେ ଛୋଟଛୋଟ କଥା ପାଇଁ ସରକାରୀ ନିଷ୍ପତ୍ତିକୁ ଅପେକ୍ଷା ନ ରଖି ନିଜେ ନିଷ୍ପତ୍ତି ଗ୍ରହଣର ଚ୍ୟାଲେଞ୍ଜ ନେଇପାରୁଥିବେ ।''

ବିଜୁବାବୁ ଠିକ୍‌ଭାବେ ବୁଝିଥିଲେ ଯେ- ସରକାରୀ ବିଚାରଧାରା ଓ ପ୍ରକ୍ରିୟା ପାରମ୍ପରିକ ଓ ଖୁବ୍ ମନ୍ଥର । ତେଣୁ ଲୋକଙ୍କ ସମସ୍ୟାରେ ତ୍ୱରିତ ନିଷ୍ପତ୍ତି ଗ୍ରହଣକୁ ସେ ଖୁବ୍ ପସନ୍ଦ ଓ ପ୍ରଶଂସା କରୁଥିଲେ ।



# ସୁକର୍ଣ୍ଣ କହିଛନ୍ତି,
# ଆପଣ ଆଉଥରେ ବାହାହୋଇ ପଡ଼ନ୍ତୁ

ମଧ୍ୟାହ୍ନ ଭୋଜନରେ ବସିଥା'ନ୍ତି ପ୍ରଧାନମନ୍ତ୍ରୀ ନେହେରୁ। ପାଖରେ ଥା'ନ୍ତି ତାଙ୍କ ପରିବାରର ବିଜୟଲକ୍ଷ୍ମୀ ପଣ୍ଡିତ ଓ ଇନ୍ଦିରା ଗାନ୍ଧୀ। ବିଜୁ ପଟ୍ଟନାୟକ ଇଣ୍ଡୋନେସିଆରୁ ଫେରି ପ୍ରଧାନମନ୍ତ୍ରୀଙ୍କ ସହ ମଧ୍ୟାହ୍ନ ଭୋଜନରେ ଯୋଗଦେଲେ। ନେହେରୁ ବିଜୁବାବୁଙ୍କ ଇଣ୍ଡୋନେସିଆ ସଂପର୍କରେ ପଚାରିଲେ। ସୁକର୍ଣ୍ଣ କେମିତି ଅଛନ୍ତି? ଦେଶର ପରିସ୍ଥିତି କ'ଣ, ଇତ୍ୟାଦି...। ବିଜୁବାବୁ ସବୁ ଉତ୍ତର ଦେଲେ ଗୋଟିଗୋଟି କରି। ହେଲେ ମୁରୁକି ହସା ଦେଇ କହିଲେ– ''ସୁକର୍ଣ୍ଣ ଆଉ ଗୋଟିଏ ଖବର ବି ଦେଇଛନ୍ତି?'' ନେହେରୁ ଖୁବ୍ କୌତୂହଳରେ କହିଲେ– ''କ'ଣ ଖବର ଦେଇଛନ୍ତି, କୁହ? କଥା ଚାପି ରଖୁଛ କାହିଁକି?'' ବିଜୁବାବୁ କହିଲେ– ''ସେ କହିଛନ୍ତି ଯେ, ତୁମ ନେହେରୁଙ୍କର ଦିମାକ୍ ଭଲ ନାହିଁ। ତେଣୁ ତାଙ୍କୁ କୁହ ଆଉଥରେ ବାହା ହୋଇପଡ଼ିବେ। ଯଦି ଇଣ୍ଡୋନେସିଆରୁ ବି ଝିଅ ଦରକାର ପଡ଼ନ୍ତି, ମୁଁ ପଠାଇ ଦେବି।'' ଏକଥା ଶୁଣି ନେହେରୁ ଠୋ ଠୋ ହୋଇ ହସିଲେ। ତାଙ୍କ ସହ ଅନ୍ୟମାନେ ମଧ୍ୟ ହସିଲେ। କିନ୍ତୁ ଇନ୍ଦିରା ବାପାଙ୍କ ପ୍ରତି ଏପରି ମନ୍ତବ୍ୟକୁ ଗ୍ରହଣ କରିପାରିନଥିଲେ ବୋଧେ। ତେଣୁ ଗମ୍ଭୀର ହୋଇ ବସିଥିଲେ। ନେହେରୁ କିନ୍ତୁ, ଏ କଥାକୁ ବେଶ୍ ଉପଭୋଗ କରୁଥିଲେ। ପୁଣି ଉତ୍କଣ୍ଠାର ସହ ପଚାରିଲେ– ''ଆଉ କ'ଣ କହିଲେ ସୁକର୍ଣ୍ଣ।'' ପୁଣି ବିଜୁବାବୁ କହିଲେ– ''ତା'ହେଲେ କ'ଣ ଏକଥା ଆପଣଙ୍କ ମନକୁ ପାଇଛି!''

ପୁଣି ହାସ୍ୟରୋଳ ସୃଷ୍ଟି ହେଲା।



# ଇଂଲଣ୍ଡ, ଆମେରିକା ଭଳି ପିଲାଙ୍କ ବହି

ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳ । ପ୍ରାଥମିକ ସ୍ତରର ଜାତୀୟକରଣ ପ୍ରସ୍ତାବ ଉଠିଲା । ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପିଲାଙ୍କ ପାଠ୍ୟପୁସ୍ତକ ପ୍ରକାଶକରି ସରକାର ଛାତ୍ରଛାତ୍ରୀଙ୍କୁ ଯୋଗାଇବେ । ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌ରେ ଏ ସଂପର୍କରେ ଆଲୋଚନା ଚାଲିଥାଏ । ଏହି ବୈଠକରେ ଥା'ନ୍ତି– ଜାତୀୟ କବି ବୀରକିଶୋର ଦାସ, ରାମକୃଷ୍ଣ ନନ୍ଦଙ୍କ ସମେତ କିଛି ସରକାରୀ ଅଧିକାରୀ । ବିଜୁବାବୁ ସରକାରୀ ଅଧିକାରୀମାନଙ୍କ ଉପରେ ଖୁବ୍ ଖପ୍ପା ହେଉଥା'ନ୍ତି । ଓଡ଼ିଆ ବହିଗୁଡ଼ିକରେ ମଳା କାଗଜ, ମେଞ୍ଚାମେଞ୍ଚା କାଳି, ସୂତା ସିଲେଇ, ଧରିଲେ ଚିରିଯିବା ଅବସ୍ଥା ଦେଖି ସେ ବିରକ୍ତି ଭାବ ପ୍ରକାଶ କରୁଥା'ନ୍ତି । କାହିଁକି ମୋ ପିଲା ସୁଦୃଶ୍ୟ, ସୁଦୃଢ଼ ବନ୍ଧେଇ ବହି ପଢ଼ିବେନି । ବିଜୁବାବୁ ଇଂଲଣ୍ଡ ଓ ଆମେରିକା ଭଳି ଦେଶରୁ ଆଣିଥିବା ବହିସବୁ ସମସ୍ତଙ୍କୁ ଦେଖାଇଲେ । ଦେଖ ! ସେମାନେ କେମିତି ବହି ପ୍ରସ୍ତୁତ କରୁଛନ୍ତି । ଆମର ଏଠି ତିନି / ଚାରି ଲକ୍ଷ ପିଲାଙ୍କ ବହି ଛାପୁଛନ୍ତି ତିନି / ଚାରି ଜଣ ପ୍ରକାଶକ । ସେମାନେ ତ ଟଙ୍କା ପଛରେ ଧାଇଁଛନ୍ତି, ତେଣୁ ବହିର ମାନ ବଢ଼ିବ କେମିତି ? ଆଉ ସେସବୁ ହୋଇପାରିବନି । ଶିକ୍ଷା ବିଭାଗ ସୁନ୍ଦର ଓ ସଦୃଶ୍ୟ ବହି ଛାପି ପିଲାଙ୍କୁ ଯୋଗାଉ । ଯାହା ଖର୍ଚ୍ଚ ହେବ ବୁଝାଯିବ ।

ଉପସ୍ଥିତ ଅଧିକାରୀମାନେ କହିଲେ– "ସରକାରୀ ପ୍ରେସ୍‌ରେ ଏବେ ବଜେଟ, ଗାଜେଟ୍, କିଛି ସରକାରୀ ରିପୋର୍ଟ ଓ ଫର୍ମ ଛାପାଯାଉଛି । ତେଣୁ ଏଠାରେ ରଙ୍ଗିନ୍ ଛାପା ହୋଇପାରିବନି ।" ହେଲେ ବିଜୁବାବୁ କ'ଣ ଡରିବା ଲୋକ । ନିଷ୍ପତ୍ତି ହେଲା– ବୀରକିଶୋର ଦାସଙ୍କ ନେତୃତ୍ୱରେ ଏକ କମିଟି ଗଠନ ହେବ । ଏହି କମିଟି ପାଠ୍ୟପୁସ୍ତକ ପ୍ରଣୟନ କରିବ । ବିଦେଶରୁ ଅଫ୍‌ସେଟ୍ ମେସିନ୍ ଆସିବ । ଆସନ୍ତା ଶିକ୍ଷାବର୍ଷଠାରୁ ପିଲା ସରକାରୀ ପାଠ୍ୟପୁସ୍ତକ କିଣି ପଢ଼ିବେ । ବିଜୁବାବୁଙ୍କ ଏହି ଯୋଜନାକୁ ଭଣ୍ଡୁର

କରିବାପାଇଁ ପ୍ରକାଶକମାନେ ଏକାଠି ହୋଇଗଲେ । ନା, ଏହା ହୋଇପାରିବନି ବୋଲି ପ୍ରଘର ହେଲା । କିନ୍ତୁ ଅସମ୍ଭବ ଶବ୍ଦଟି ବିଜୁବାବୁଙ୍କ ଜାତକରେ ନାହିଁ । ତାଙ୍କ ପରିକଳ୍ପନା ଶେଷକୁ ସାର୍ଥକ ହେଲା । ଓଡ଼ିଆ ପିଲାଙ୍କ ହାତରେ ପଢ଼ିବାକୁ ମିଳିଲା ସୁଦୃଶ୍ୟ ସୁନ୍ଦର ରଙ୍ଗିନ ବହି ।



# ପୁଅବୋହୂ ଖାଇବାକୁ ନ ଦେଲେ ଚିଠି ଲେଖିବୁ

୧୯୭୭ ନିର୍ବାଚନ ସମୟର କଥା । ବିଜୁବାବୁ କଳିଙ୍ଗ ରଥରେ ସକାଳୁ ବାହାରିଥିଲେ ବାଙ୍କି ନିର୍ବାଚନ ପ୍ରଚାର ପାଇଁ । ବାରଙ୍ଗ ପାରିହୋଇ ତ୍ରିଶୁଳିଆ ଦେଇ ନଈକୂଳେ ଯାଉଥା'ନ୍ତି । ସାଙ୍ଗରେ ଥା'ନ୍ତି ବରିଷ୍ଠ ସାମ୍ବାଦିକ ବରେନ୍ଦ୍ରକୃଷ୍ଣ ଧଳ । ସଭା ଥାଏ ଡମପଡ଼ା ଗଡ଼ଠାରେ । ବିଜୁବାବୁ ଡ୍ରାଇଭରକୁ ଗାଳି ଦେଉଥା'ନ୍ତି । ଶଗଡ଼ ଭଳି ଗାଡ଼ି ଚଳାଉଛୁ କ'ଣ ? କିଛି ବାଟ ଗଲାପରେ ପଡ଼ିଲା କାଳିପ୍ରସାଦ ଚକୁଳେଶ୍ୱର ରାସ୍ତା ପାଖରେ ଏକ ବଡ଼ ଆମ୍ବତୋଟା । ହଠାତ ବିଜୁବାବୁ ଡ୍ରାଇଭରକୁ କହିଲେ– "ଗାଡ଼ି ରୋକ୍ ।" ସେ ଗାଡ଼ିରୁ ଓହ୍ଲାଇଲେ । କିଛିସମୟ ଭିଡ଼ିମୋଡ଼ି ହେଲେ । ବରେନ୍ଦ୍ର ବାବୁଙ୍କୁ ସମ୍ବୋଧନ କରି କହିଲେ– "ଆରେ ଧଳ ! ସେ ବୁଢ଼ାଟାକୁ ଡାକ ।" ବରେନ୍ଦ୍ର ବାବୁ ପାଖ ଆମ୍ବତୋଟାକୁ ଚାହିଁଲେ । ଜଣେ ବୁଢ଼ାଲୋକ କାଠ ଗୋଟାଉଥାଏ । ବରେନ୍ଦ୍ରବାବୁ ତା'କୁ ହାତଠାରି ଡାକିଲେ । ବୁଢ଼ାଲୋକଟି ପାଖକୁ ଆସିଲା । ବିଜୁବାବୁ ପଚାରିଲେ– "ତୁମ ବୟସ କେତେ ହବ ?" ବୁଢ଼ା କହିଲା– "ଚାରିକୋଡ଼ିରୁ ଅଧିକା ହେବ ।"

ବିଜୁବାବୁ ପୁଣି ପଚାରିଲେ– "ଏ ଖରାବେଳଟାରେ କାହିଁକି କାଠ ଗୋଟାଉଛ ?"

ବୁଢ଼ା କହିଲା– "କାଠ ନ ନେଲେ ବୋହୂ ଖାଇବାକୁ ଦେବନି ।"

ଗୋଟାଏ ପୁଅ କଟକରେ କାମ କରୁଛି, ଆଉ ଗୋଟିଏ ବାଙ୍କିରେ ଚାକିରି କରିଛି । ସେତେବେଳକୁ ବିଜୁବାବୁଙ୍କ ଚାରିପଟେ ଲୋକେ ଜମିଗଲେଣି । ସେ ଲୋକଙ୍କୁ କହିଲେ– "ଆରେ, ଯା ପୁଅକୁ ଡାକିଲ ?" ଅଳ୍ପ ସମୟପରେ ଜଣେ ମଧ୍ୟବୟସ୍କ ଲୋକ ସଫା ପ୍ୟାଣ୍ଟସାର୍ଟ ପିନ୍ଧି ସେଠାରେ ପହଞ୍ଚିଲା । ବିଜୁବାବୁ ତା'କୁ ପଚାରିଲେ– "ଇଏ ତୋ ବାପା !"

– "ହଁ ।"

ଏଥର ବିଜୁବାବୁ ତା' ଗାଲରେ ଗୋଟେ ବ୍ରହ୍ମଚାପୁଡ଼ା ଦେଲେ । ପଚାରିଲେ– ''ଆରେ, ତୋ ବାପାର ବୟସ କେତେ ?''

– ''ଆଜ୍ଞା ୮୨ ବର୍ଷ ।''

– ''ଇଡ଼ିଏଟ୍, ୮୨ ବର୍ଷର ବାପାକୁ କାଠ ଗୋଟେଇବାକୁ ପଠାଉଛୁ ?''

ଏଥର ବୁଢ଼ାକୁ ଡାକି ବିଜୁବାବୁ ୨୦ ଟଙ୍କିଆ ନୋଟ୍ ବିଡ଼ାଟେ ବଢ଼ାଇ ଦେଲେ ।

ବୁଢ଼ା କହିଲା– ''ୟା'କୁ ନେଇ ମୁଁ କ'ଣ କରିବି ?''

– ''ଏ ଟଙ୍କାରୁ ଦଶଖଣ୍ଡ ପୋଷ୍ଟକାର୍ଡ଼ କିଣିବୁ । ବୋହୂ ତୋତେ ଖାଇବାକୁ ନ ଦେଲେ ପୋଷ୍ଟକାର୍ଡ଼ରେ ଲେଖି ମୋ ପାଖକୁ ପଠାଇବୁ । ମୁଁ ଯୋଉଠି ଥିଲେ ବି, ତୋ ପୁଅର ଚକିରି ନେଇଯିବି । ବାକି ପଇସାରେ, ତୋର ଯାହା ଇଚ୍ଛା ଖାଇବୁ ।''

ବିଜୁବାବୁଙ୍କ କଥାଶୁଣି ବୁଢ଼ାର ପୁଅ ବିଜୁବାବୁଙ୍କ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲା । ''ଆଜ୍ଞା, ମୋତେ କ୍ଷମା କରନ୍ତୁ । ବାପା ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କୁ ମୁଁ ଭଲରେ ରଖିବି ।'' ବିଜୁବାବୁ କହିଲେ– ''ପୁଅର କର୍ତ୍ତବ୍ୟ କର । ଯା, ବାପାଙ୍କୁ ଭଲରେ ରଖ ।'' ଏଥର ବିଜୁବାବୁ ଗାଡ଼ିକୁ ଆସିଲେ । ସେଠିକା ଲୋକ ଆଶ୍ଚର୍ଯ୍ୟ ଓ ସ୍ତମ୍ଭୀଭୂତ ହୋଇପଡ଼ିଥିଲେ ସେ ଦିନର ସେଇ ଆକସ୍ମିକ ଘଟଣାରେ ।



# ନିଆଁକୁ ଡେଇଁବାକୁ ମୁଁ ପ୍ରସ୍ତୁତ

ଡଚମାନଙ୍କ ଶାସନରେ ଥାଏ ଇଣ୍ଡୋନେସିଆ । ସେମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଥା'ନ୍ତି ଦେଶବାସୀ । ମୁକ୍ତି ସଂଗ୍ରାମ ଚାଲିଥାଏ, ସାରା ଦେଶରେ । ପଣ୍ଡିତ ନେହେରୁ ଖବର ପାଇଲେ ଯେ, ଇଣ୍ଡୋନେସିଆର ପରିସ୍ଥିତି ଖୁବ୍ ସଙ୍ଗିନ୍ । ମୁକ୍ତି ସଂଗ୍ରାମୀ ସୁକର୍ଣ୍ଣ, ଶାହରିୟର, ମହମ୍ମଦ ହଟ୍ଟା ପ୍ରମୁଖ ଡଚ୍‌ମାନଙ୍କ ଦ୍ୱାରା ନଜରବନ୍ଦୀ । କେଉଁ ମୁହୂର୍ତ୍ତରେ ଯେ, ସେମାନଙ୍କୁ ହତ୍ୟାକରି ସ୍ୱାଧୀନତା ଆନ୍ଦୋଳନକୁ ସେମାନେ ଦମନ କରିବେ, ତାହା ଉଦ୍‌ବେଗର ବିଷୟ ଥିଲା । ଚାରିପାଖରୁ ଘେରି ଯାଇଥା'ନ୍ତି ଡଚବାହିନୀ । ସଂଗ୍ରାମୀମାନେ ଏକାଠି ହୋଇ ଗୋଟିଏ ଜାଗାରେ ଆଲୋଚନା କରୁଥିବାବେଳେ, ତାଙ୍କ ଚାରିପଟେ ଥାଏ ଏକ ବିପଦମୁଖୀ ବଳୟ । ଯେଉଁଠୁ ଖସିଯିବାର ବାଟ ନାହିଁ । ଘରୁ ପଦାକୁ ବାହାରିଲେ ବିପଦ । ନେହେରୁ ଚିନ୍ତାରେ ପଡ଼ିଗଲେ । ସେଠାରେ ସଂଗ୍ରାମୀମାନଙ୍କୁ ସାହାଯ୍ୟ କରିବାକୁ ପଡ଼ିବ । ଆସନ୍ନ ମୃତ୍ୟୁରୁ ସଂଗ୍ରାମୀଙ୍କୁ ଉଦ୍ଧାର କରିବାକୁ ହବ । କିଏ ଯାଇପାରିବ ଇଣ୍ଡୋନେସିଆ ? କିଛି ସମୟ ନିରବ ରହିବାପରେ ନେହେରୁଙ୍କ ମୁଣ୍ଡକୁ ଏକ ବୁଦ୍ଧି ଜୁଟିଲା । ନେହେରୁ ଜଣେ ସତ୍ୟାଗ୍ରହୀଙ୍କୁ ଡକାଇ କହିଲେ–

– ତୁମେ ସେଇ ଓଡ଼ିଆ ପାଇଲଟକୁ ଜାଣିଛ ?

– କିଏ ସାର୍ ?

– ସେଇ ଡେଙ୍ଗା ଯୁବକ । ଯିଏ ବ୍ରିଟିଶ୍ ରୟାଲ ଏୟାରଫୋର୍ସରେ କାମ କରୁଥିଲା । ମନେପଡୁଛି, ପଟ୍ଟନାୟକ ବୋଧହୁଏ ।

– ହଁ, ସାର୍ ସେ ବିଜୟାନନ୍ଦ । ବିଜୁ ସାର୍ !

– ସେ କୋଉଠି ରହୁଛି ?

– ଏଇ ଅଳ୍ପଦୂର, କର୍ଣ୍ଣେଲ ସାହେବଙ୍କ ଘର ପଛପଟେ । ମୁଁ ସଙ୍ଗେସଙ୍ଗେ ଡାକି ଆଣୁଛି ସାର୍ ! ଏହା ଭିତରେ ନେହେରୁ ବିଚଳିତ ହୋଇପଡୁଥା'ନ୍ତି । ମୃତ୍ୟୁ

ଭଳି ଭୟଙ୍କର କାର୍ଯ୍ୟକୁ କ'ଣ ସେ ଯୁବକ କରି ପାରିବ ? ନେହେରୁ ଦ୍ୱନ୍ଦ୍ୱରେ ଥିଲେ । ସେନାଛାଉଣି, ଗୁଳିଗୋଳା ବର୍ଷା, ତାଙ୍କୁ ଭୟାନକ ପରିସ୍ଥିତି ଭିତରୁ ଏଭଳି ଦୁଃସାହସିକ କାର୍ଯ୍ୟ ଖୁବ୍ ଚିନ୍ତାଗ୍ରସ୍ତ କରିଦେଉଥିଲା ନେହେରୁଙ୍କୁ । ବିଜୁ ଉପସ୍ଥିତ ହେଲେ ନେହେରୁଙ୍କ ସାମନାରେ । ନେହେରୁ ବସିବାକୁ କହିଲେ । ତୁମକୁ ଗୋଟିଏ କାମ କରିବାକୁ ପଡ଼ିବ ? ଇଣ୍ଡୋନେସିଆ ପରିସ୍ଥିତି ତୁମେ ଜାଣ ?

ହଁ, ସାର୍ ।

ସେଠାରେ ଖୁବ୍ ଭୟଶଙ୍କୁଳ ଭାବେ ଅଛନ୍ତି ସଂଗ୍ରାମୀମାନେ । ଆମକୁ ତାଙ୍କୁ ସାହାଯ୍ୟ କରିବାକୁ ପଡ଼ିବ । ତାଙ୍କର ଏପରି ଦୁଃସମୟରେ ଆମେ କ'ଣ ତାଙ୍କ ପାଖରେ ଠିଆ ହୋଇପାରିବାନି ?

ନିଶ୍ଚୟ ସାର୍ ? ଆପଣ ଆଦେଶ କରନ୍ତୁ, କ'ଣ କରିବାକୁ ପଡ଼ିବ ?

ସେମାନଙ୍କୁ ବିପଦରୁ ଉଦ୍ଧାର କରିବାକୁ ପଡ଼ିବ । ସଂଗ୍ରାମକୁ ଅଧିକ ଶକ୍ତିଶାଳୀ କରିବାକୁ ହେବ ।

ପାରିବି ସାର୍ । ଆପଣ ମୋ ଉପରେ ଭରସା ରଖନ୍ତୁ ।

ତୁମେ ଭାବିଛ ତ ! ଏସବୁ କାମ କେତେ ବିପଦପୂର୍ଣ୍ଣ ।

ଆପଣ କହିଲେ– ନିଆଁକୁ ଡେଇଁପାରିବି । ବିଜୁ ପଟ୍ଟନାୟକ ପାଇଁ କିଛି ବି ଅସମ୍ଭବ ନୁହେଁ ।

ତୁମେ କ'ଣ କହୁଛ, ଜାଣିପାରୁଛ ତ ? କାହିଁ ଜାକର୍ତ୍ତା, କାହିଁ ଦିଲ୍ଲୀ ! ହଜାର ହଜାର ମାଇଲ ଦୂର । ଡଚ୍‌ମାନଙ୍କ ଆଖିରେ ଧୂଳି ପକାଇ ସଂଗ୍ରାମୀମାନଙ୍କୁ ଏଠାକୁ ନେଇଆସିବାକୁ ପଡ଼ିବ । ଭଲଭାବେ ଆଉଥରେ ଚିନ୍ତାକର !

ମୁଁ ଚିନ୍ତା କରିଛି, ଆଉ ନିଷ୍ପତ୍ତି ବି ନେଇସାରିଛି । ମୁଁ ଏକା ଯିବି ଆଉ ସେଠାରେ ସଂଗ୍ରାମୀଙ୍କୁ ନେଇ ଫେରିବି । ମୋତେ ଅନୁମତି ଦିଅନ୍ତୁ ।

ସାବାସ୍ ! ତୁମଭଳି ଯୁବକ ମୋର ଦରକାର । ଆଉ ଡେରିନାହିଁ, ଯାଅ, ବାହାରିଯାଅ । ତୁମ କାମ ଆରମ୍ଭ କରିଦିଅ ।

ଏଥର ବିଜୁ ପ୍ରସ୍ତୁତ ହୋଇଗଲେ ନିଜର ଡାକୋଟା ବିମାନ ନେଇ ଇଣ୍ଡୋନେସିଆ ରାଜଧାନୀ ଜାକର୍ତ୍ତା ଅଭିମୁଖେ । ସେତେବେଳେ ବିଜୁଙ୍କ ବୟସ ୩୨ ବର୍ଷ । ଦେଶର ଉଦ୍ଧାର ଗୌରବର ଦିପ୍ତୀ । ଜୀବନକୁ ପାଣି ଛଡ଼େଇ ଦୁଃସାହସୀ, ନିର୍ଭିକ ବିଜୁ ବାହାରି ପଡ଼ିଲେ ଇଣ୍ଡୋନେସିଆ ଅଭିମୁଖେ । ସାଙ୍ଗରେ ଥିଲେ– ଜୀବନସାଥୀ ପ୍ରାଣପ୍ରିୟା ପତ୍ନୀ ଜ୍ଞାନ ପଟ୍ଟନାୟକ । ଏହି ଦୁଃସାହସିକ ଅଭିଯାନରେ ଜ୍ଞାନ ହିଁ ଥିଲେ ତାଙ୍କର ପ୍ରେରଣା । ସାନପୁଅ ପପୁକୁ ମାତ୍ର ଚଉଦଦିନ ହୋଇଥାଏ । ଏ ସମୟରେ ମା'ଙ୍କ ମନ ପୁଅ ପାଖରେ ଥିବା ସ୍ୱାଭାବିକ । କିନ୍ତୁ ଦେଶପ୍ରତି କର୍ତ୍ତବ୍ୟ ତାଙ୍କ ପାଖରେ ବଡ଼ । କଟକରେ ପୁଅକୁ ଛାଡ଼ି ସ୍ୱାମୀଙ୍କ ସହ ଏହି ଦୁଃସାହସିକ ଅଭିଯାନରେ ସାମିଲ ହୋଇଥିଲେ ଜ୍ଞାନ ।

ଡଚ୍ ସରକାର ବିରୋଧରେ ଇଣ୍ଡୋନେସିଆରେ ଘମାଘୋଟ ଲଢ଼େଇ ଚାଲିଥାଏ । ସେମାନଙ୍କର ନଜର ଏଡ଼େଇବା କଷ୍ଟସାଧ୍ୟ । ସ୍ଥଳସେନା ଓ ବାୟୁସେନାଙ୍କ ଆଖିରେ ଧୂଳିଦେଇ ସଂଗ୍ରାମୀଙ୍କୁ ଆଣିବା କଷ୍ଟସାଧ । ଡଚ୍ ସରକାର ଚରମ କାର୍ଯ୍ୟପନ୍ଥା ଗ୍ରହଣ କରିଥାଏ । ଇଣ୍ଡୋନେସିଆକୁ ଧ୍ୱଂସସ୍ତୁପରେ ପରିଣତ କରିବା ଆଉ ବିପ୍ଳବୀ ନେତାଙ୍କୁ ଶେଷ କରିଦେବା ଚକ୍କରରେ ଥାଏ ଡଚ୍ ସରକାର । ଚାରିଆଡ଼େ ସେନା ଛାଉଣୀ, ଆଉ ଗୁଳିଗୋଳା ବର୍ଷା ଭିତରେ କେତେବେଳେ ଯେ ସଂଗ୍ରାମୀଙ୍କ ଜୀବନ ଦୀପସବୁ ଲିଭିଯିବ, ତାହା କହିହବନି ।

ଦୁଃସାହସୀ ବିଜୁ ଜୀବନକୁ ସଂକଟାପନ୍ନ କରି ପ୍ରବେଶ କଲେ ଡଚ୍ ସେନାଙ୍କ ସୀମାବଳୟକୁ । ବିପ୍ଳବୀମାନେ ଜାକର୍ତ୍ତାରେ ଥା'ନ୍ତି । କାଟାରିଆ ଦେଇ ଜାକର୍ତ୍ତା ଯିବାକୁ ପଡ଼ିବ । ଡଚ୍‌ମାନଙ୍କ ରାଜଧାନୀ କାଟାରିଆ । ତେଣୁ ସତର୍କତା ଜରୁରୀ । ନିର୍ଭିକ ବିଜୁଙ୍କର କିନ୍ତୁ ଏସବୁକୁ ଖାତିର ନଥିଲା । 'ଡାକୋଟା'କୁ ସୁରକ୍ଷିତଭାବେ ଉଡ଼ାଇଲେ । ସୁରାକ ପାଇ ଡଚ୍‌ମାନେ ଡାକୋଟା ଉପରକୁ ଘନଘନ ଆକ୍ରମଣ କଲେ । ଚାରିପଟୁ ଘେରିଗଲେ । ମାତ୍ର ନିଜ କୌଶଳରେ ବିଜୁ ବିମାନକୁ ଉପରକୁ ଉଠାଇନେଲେ । ଡଚ୍‌ମାନେ ତାଙ୍କର ପତ୍ତା ପାଇଲେନି । ନିରାପଦରେ ଜାକର୍ତ୍ତାରେ ପହଞ୍ଚିଲେ ବିଜୁବାବୁ । ସେଠାରେ ଯାଇ ଦେଖିଲେ ଡଃ ସୁକର୍ଣ୍ଣ, ଡଃ ମହମ୍ମଦ ହଟ୍ଟା, ଡଃ ସାହାରିୟାରଙ୍କ ଭଳି ପ୍ରମୁଖ ସଂଗ୍ରାମୀମାନେ ବିପଦ ଶଙ୍କୁଳ ପରିସ୍ଥିତିରେ । ଡଚ୍ ସରକାର ଏମାନଙ୍କୁ ନିଃଶେଷ କରିଦେବାକୁ ସବୁପ୍ରକାର ଯୋଜନା କରିଥାଏ । ବିଜୁବାବୁ

ସୁକର୍ଣ୍ଣଙ୍କ ସହ କଥା ହୋଇ ସବୁ କିଛି ବୁଝିଲେ । ସବୁ ତଥ୍ୟ ସଂଗ୍ରହ ସହ ସଂଗ୍ରାମୀମାନଙ୍କୁ ଧରି ଦିଲ୍ଲୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ତାହା ପୁଣି ଖୁବ୍ ସତର୍କତାର ସହ । ଫେରନ୍ତା ବାଟରେ ବି ଡଚ୍‌ଙ୍କ ଆକ୍ରମଣ ଆଶଙ୍କା ଥାଏ । ତେଣୁ ମଧ୍ୟରାତ୍ରରେ ଡଚ୍‌ଙ୍କଠାରୁ ବିମାନକୁ ନିରାପଦରେ ଆଣିବାଲାଗି ସେ ପ୍ରାୟ ଦେଢ଼ ହଜାର କିଲୋମିଟର ସମୁଦ୍ର ଉପରେ ଉଡ଼ିଆସିଥିଲେ । ବିମାନ ଉଡୁଥିଲା ପାଣିଠାରୁ ଅଳ୍ପ ଉପରେ । ଇଣ୍ଡୋନେସିଆ ସଂଗ୍ରାମୀମାନଙ୍କ ମୁହଁରେ ଫୁଟିଉଠିଲା ହସ । ସମସ୍ତେ ଓହ୍ଲାଇଲେ ନୂଆଦିଲ୍ଲୀରେ । ସାରା ବିଶ୍ୱ ତଟସ୍ଥ ହୋଇଗଲା । ନେହେରୁ ଚକିତ ହୋଇଗଲେ । ବିପ୍ଳବୀମାନେ ନୂଆଦିଲ୍ଲୀରେ ପହଞ୍ଚିବାପରେ ବିଶ୍ୱର ଅନ୍ୟ ବଡ଼ବଡ଼ ରାଷ୍ଟ୍ରମାନଙ୍କ ସହାୟତା ଲୋଡ଼ିବା ସହ ଡଚମାନଙ୍କ ଅମାନୁଷିକ ଅତ୍ୟାଚାର ଓ ଅନ୍ୟାୟ ଯୁଦ୍ଧ ସଂପର୍କରେ ପ୍ରଚାର କଲେ । ଅନ୍ୟରାଷ୍ଟ୍ରମାନେ ମଧ୍ୟ ଏହାର ତୀବ୍ର ନିନ୍ଦା କଲେ । ଶେଷରେ ବିପ୍ଳବୀ ବାହିନୀର ଏପରି ତୀବ୍ର ପ୍ରତିରୋଧକୁ ପ୍ରତିହତ ନକରି ପାରି ଡଚ୍ ସରକାର ବାଧହୋଇ ଇଣ୍ଡୋନେସିଆ ଛାଡ଼ି ପଳାଇ ଆସିଲେ । ସ୍ୱାଧୀନ ହେଲା ଇଣ୍ଡୋନେସିଆ । ବିଜୟ ହେଲା ବିଜୁଙ୍କର ।



# ବୋଲୋ ବାଲିଆ, କହୋ ଓଡ଼ିଆ !

ରାଜନୀତି ଜୀବନ ଭିତରେ ପୂର୍ବତନ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖରଙ୍କ ସହ ତାଙ୍କର ଖୁବ୍ ଘନିଷ୍ଠତା ଥିଲା । ଚନ୍ଦ୍ରଶେଖରଙ୍କଠାରୁ ବିଜୁବାବୁ ବୟସରେ ବଡ଼ ଥିଲେ, ମାତ୍ର ଉଭୟ ପରସ୍ପରକୁ ବନ୍ଧୁ ଭଳି ବ୍ୟବହାର କରୁଥିଲେ । ଯେତେବେଳେ ଯେଉଁଠି ବି ଦେଖା ହେଉଥିଲେ ମଜାରେ ସେ ଚନ୍ଦ୍ରଶେଖରଙ୍କୁ କହୁଥିଲେ– ''ବୋଲ, ବାଲିଆ !'' ଅର୍ଥାତ୍ ବାଲିଆ ଥିଲା ଚନ୍ଦ୍ରଶେଖରଙ୍କ ନିର୍ବାଚନ ମଣ୍ଡଳୀ । ତେଣୁ ସେଠାର ମାଟିର ସନ୍ତାନ ଭାବେ ବିଜୁ ତାଙ୍କୁ ସମ୍ବୋଧନ ରଖୁଥିଲେ । ଏହାର ପ୍ରତ୍ୟୁତ୍ତରରେ ଚନ୍ଦ୍ରଶେଖର କହୁଥିଲେ– ''କହୋ, ଓଡ଼ିଆ !'' × × × ଶେଷ ସମୟ ବେଳକୁ ରାମ ମନୋହର ଲୋହିଆ ହସ୍‌ପିଟାଲରେ ସେ ଚିକିତ୍ସିତ ହେଉଥିବାବେଳେ ଚନ୍ଦ୍ରଶେଖର ବିଜୁବାବୁଙ୍କୁ ଦେଖିବାକୁ ଯାଇଥିଲେ । ଡାକ୍ତରମାନେ ତାଙ୍କୁ ଡାକ୍ତରଖାନାରେ ରହିବାକୁ କହୁଥିଲେ, ମାତ୍ର ସେ କାହାରି କଥା ଶୁଣୁ ନ ଥିଲେ । ଚନ୍ଦ୍ରଶେଖର ମଧ୍ୟ ତାଙ୍କୁ ଅନୁରୋଧ କଲେ, ଡାକ୍ତରମାନଙ୍କ କଥା ଶୁଣିବାକୁ । ବାରମ୍ବାର ବୁଝାଇଲେ । ମାତ୍ର ବିଜୁବାବୁ ପାଲଟା କହିଥିଲେ– ''ଡାକ୍ତରମାନେ ମୋ ଫୁସ୍‌ଫୁସ୍ ସଜାଡ଼ି ପାରିବେନି । ମୁଁ ଏଠି ପଡ଼ି ଲାଭ କ'ଣ ? ଦିନ ଦିନ ଆଉ ଏମିତି କେତେ ପଡ଼ି ରହିବି ? ତେଣେ ଅନେକ କାମ ବାକି ଅଛି ?'' ବୟସକୁ ମାନୁ ନ ଥିଲେ କି ରୋଗ୍‌କୁ ଖାତିର ନ ଥିଲା । ସ୍ୱପ୍ନ ଅଧୁରା ଥିଲା । ହଠାତ ସ୍ୱାସ୍ଥ୍ୟ ଗୁରୁତର ହୋଇପଡ଼ିଲା । କିଛି ବି ପରିବର୍ତ୍ତନ ଆସିଲାନି । ଜୀବନ ତମାମ କେଉଁଠି ବି ହାର ମାନି ନ ଥିବା କଳିଙ୍ଗ ସମ୍ରାଟ ମୃତ୍ୟୁ ପାଖରେ ହାର ମାନିଥିଲେ । ୧୯୯୭ ମସିହା ଏପ୍ରିଲ ୧୭ ତାରିଖ ଓଡ଼ିଆ ଘରେ ପାଳିତ ହେଉଥାଏ ସୁଦଶାବ୍ରତ । ଘରିଆଡ଼େ ମହାଲକ୍ଷ୍ମୀଙ୍କର ପୂଜାର୍ଚ୍ଚନା ଚାଲିଥିବା ଏହି ସମୟରେ ଲିଭିଗଲା ବିଜୁବାବୁଙ୍କ ଜୀବନ ଦୀପ ।





## ବିଜୟ କୁମାର ମହାନ୍ତି

ଫିଚର ଓ ଶିଶୁସାହିତ୍ୟରେ ବିଜୟ କୁମାର ମହାନ୍ତି ପାଠକଙ୍କ ନିକଟରେ ପରିଚିତ । କଟକ ଜିଲ୍ଲା ନିଆଳି ଥାନା ଅନ୍ତର୍ଗତ କସର୍ଦା ଗାଁରେ ଲେଖକଙ୍କ ଜନ୍ମ । ମହାନ ଜନନେତା ବିଜୁ ପଟ୍ଟନାୟକଙ୍କ ସଂପର୍କରେ ତଥ୍ୟ ଖୋଜୁ ଖୋଜୁ ସେ ଏହି ପୁସ୍ତକଟିର ପରିକଳ୍ପନା କରିଥିଲେ । ବିଜୁ ପଟ୍ଟନାୟକ ଏମିତି ଜଣେ ନେତା ଥିଲେ , ଯାହାଙ୍କ ଲୋକପ୍ରିୟତା ଏକଦା ଓଡ଼ିଶାରେ ଶୀର୍ଷରେ ଥିଲା । କେବଳ ରାଜ୍ୟ ନୁହେଁ, ଦେଶ ପାଇଁ ମଧ୍ୟ ତାଙ୍କର ତ୍ୟାଗ ଅତୁଳନୀୟ । ତାଙ୍କ ଜୀବନର ବିଭିନ୍ନ ସମୟର ଅନେକ କାହାଣୀ ରହିଛି, ଯାହା ଉତ୍ତରପିଢ଼ି ଲାଗି ପ୍ରେରଣାଦାୟୀ । ଏସବୁ କାହାଣୀ ଖୁବ୍ ଚମତ୍କାର ଭାବେ 'ଝଡ଼ର ଇଗଲ'ରେ ସଜାଡ଼ିଛନ୍ତି ଲେଖକ ।

- ପ୍ରକାଶକ



ଜଗନ୍ନାଥ ରଥ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ